# ଟ୍ରେଡ୍ ୟୁନିୟନ ଫ୍ରଣ୍ଟରେ କାମ

(ସମସ୍ତ ପାର୍ଟି କମିଟିରେ ରିପୋର୍ଟିଂ ପାଇଁ)



କେନ୍ଦ୍ର କମିଟି,

ଭାରତର କମ୍ୟୁନିଷ୍ଟ ପାର୍ଟି ମାର୍କ୍ସବାଦୀ

• ମୂଲ୍ୟ : ପାଞ୍ଚ ଟଙ୍କା

# ଟ୍ରେଡ୍ ୟୁନିୟନ୍ ଫ୍ରଣ୍ଟରେ କାମର ପର୍ଯ୍ୟାଲୋଚନା ଓ ଆଶୁ କର୍ତ୍ତବ୍ୟ

(କେବଳ ପାର୍ଟି ସଭ୍ୟମାନଙ୍କ ପାଇଁ)

(''ଟ୍ରେଡ୍ ୟୁନିୟନ୍ ଫ୍ରଣ୍ଟରେ ଆମ କାମର ପର୍ଯ୍ୟାଲୋଚନା ଓ ଆଶୁ-କର୍ତ୍ତବ୍ୟ'' ଶୀର୍ଷକ ଦଲିଲ ପାର୍ଟିର କେନ୍ଦ୍ର କମିଟି ୨୦୦୨ ନଭେମ୍ବର ୨୨-୨୪ ତାରିଖରେ ବୈଠକରେ ଗ୍ରହଣ କରିଛନ୍ତି। ସମସ୍ତ ପାର୍ଟି କମିଟି ଏହି ଦଲିଲ୍‌ର ରିପୋର୍ଟିଂ ହେବ ବୋଲି ପାର୍ଟିର ପଲିଟ୍‌ବ୍ୟୁରୋ ଜଣାଇଛନ୍ତି)

## ଉପକ୍ରମଣିକା

କେନ୍ଦ୍ର କମିଟି ଟ୍ରେଡ୍ ୟୁନିୟନ ଫ୍ରଣ୍ଟରେ କାମର ପର୍ଯ୍ୟାଲୋଚନା କରିବା ସହିତ ଏବେ ଦେଖା ଦେଇଥିବା ନୂଆ ନୂଆ ବିଷୟ ଓ ସମସ୍ୟା ଗୁଡିକ ଉଲ୍ଲେଖ କରି କେତେକ ନଗଦ କର୍ତ୍ତବ୍ୟ ନିର୍ଦ୍ଧାରଣ କରିଛନ୍ତି।

ଗୋଟିଏ କମ୍ୟୁନିଷ୍ଟ ପାର୍ଟି ପାଇଁ ଶ୍ରମିକ ଶ୍ରେଣୀର ଏକ ବିଶେଷ ଭୂମିକା ରହିଛି। ସମାଜର ସକଳ ନିଷ୍ପତ୍ତି ଓ ଶୋଷିତ ଅଂଶର ବୈପ୍ଳବିକ ସଂଗ୍ରାମରେ ଏହି ଶ୍ରେଣୀ ହିଁ ନେତୃତ୍ୱକାରୀ ଭୂମିକା ଗ୍ରହଣ କରିବ। ଟ୍ରେଡ୍ ୟୁନିୟନ ଫ୍ରଣ୍ଟରେ ଆମ କାମର ଲକ୍ଷ ବିଷୟରେ ଆମକୁ ସମଗ୍ର ପାର୍ଟି ଓ ବିଶେଷତଃ ଟ୍ରେଡ୍ ୟୁନିୟନ ଗୁଡିକରେ କାମ କରୁଥିବା ପାର୍ଟି କର୍ମୀମାନଙ୍କୁ ଧାରାବାହିକ ଭାବେ ଶିକ୍ଷିତ କରିବାକୁ ପଡିବ। ୧୯୬୭ରେ ଗୃହୀତ 'ଟ୍ରେଡ୍ ୟୁନିୟନ ଫ୍ରଣ୍ଟରେ ଆମ କର୍ତ୍ତବ୍ୟ' ଶୀର୍ଷକ ଦଲିଲ ଓ ପୁଣି ୧୯୮୩ର ଦଲିଲରେ କୁହାଯାଇଥିଲା ଯେ ''ଗୋଟିଏ ମାର୍କ୍ସବାଦୀ-ଲେନିନ୍‌ବାଦୀ ପାର୍ଟିର ଟ୍ରେଡ୍ ୟୁନିୟନ ଫ୍ରଣ୍ଟ କାମ ଶ୍ରମିକ ଶ୍ରେଣୀର ଅର୍ଥନୈତିକ ସ୍ୱାର୍ଥରକ୍ଷା ପାଇଁ ଦୈନନ୍ଦିନ କାର୍ଯ୍ୟର ପରିଚାଳନାରେ ସୀମାବଦ୍ଧ ନୁହେଁ। ଶ୍ରମିକ ଶ୍ରେଣୀର ଦୈନନ୍ଦିନ ସ୍ୱାର୍ଥର ସୁରକ୍ଷା କରିବା ସଂଗେ ସଂଗେ ବୈପ୍ଳବିକ୍ ଚେତନାର ସହିତ ତାକୁ ଏକ ଶୃଙ୍ଖଳିତ ଶ୍ରେଣୀଭାବେ ସଂଗଠିତ କରିବାକୁ ହେବ। ପାର୍ଟିର ନିକଟତର କରିବାକୁ ପଡିବ। ସେମାନଙ୍କ ଭିତରୁ ସର୍ବୋତ୍କୃଷ୍ଟ ଲୋକମାନଙ୍କୁ ପାର୍ଟି ଭିତରକୁ ଆଣିବା ସହ ସମଗ୍ର ଶ୍ରେଣୀ ଯେପରି ବୈପ୍ଳବିକ ସଂଗ୍ରାମରେ ତାର ଐତିହାସିକ ଭୂମିକା ପାଳନ କରିବ ସେଥିପାଇଁ ତାକୁ ପ୍ରସ୍ତୁତ କରିବାକୁ ହେବ।'' ସଂସ୍କାରବାଦୀ ଓ ମାର୍କ୍ସବାଦୀ-ଲେନିନ୍‌ବାଦୀ ଦୃଷ୍ଟିଭଂଗୀ ଭିତରେ ପାର୍ଥକ୍ୟ ଏଇଠାରେ ରହିଛି।

୧୯୮୩ ମସିହାରେ ''ଟ୍ରେଡ୍ ୟୁନିୟନ ଫ୍ରଣ୍ଟରେ ପାର୍ଟି କର୍ତ୍ତବ୍ୟ'' ଦଲିଲ କେନ୍ଦ୍ର କମିଟି ଗ୍ରହଣ କରିଥିଲେ। ୧୯୬୭ର ଦଲିଲକୁ ଆଧାର କରି ଏହାଥିଲା ଏକ ପୂର୍ଣ୍ଣାଙ୍ଗ ଦଲିଲ।

ଟ୍ରେଡ଼ ୟୁନିୟନ ଫ୍ରଣ୍ଟରେ ଆମ କାମର ପଥପ୍ରଦର୍ଶକ ଭାବେ ଏହା କାମ କରିବା କଥା। ପରବର୍ତ୍ତୀ ପାର୍ଟି କଂଗ୍ରେସ ଗୁଡିକରେ ବାରମ୍ବାର ନିଷ୍ପତ୍ତି ସତ୍ତ୍ୱେ ଟ୍ରେଡ଼ ୟୁନିୟନ ଫ୍ରଣ୍ଟରେ ଆମ କାମ ଓ ୧୯୮୧ ମସିହା ପ୍ରସ୍ତାବରେ ଧାର୍ଯ୍ୟ ହୋଇଥିବା ନଗଦ କର୍ତ୍ତବ୍ୟମାନ କାର୍ଯ୍ୟକାରୀତାର ଧାରାବାହିକ ପର୍ଯ୍ୟାଲୋଚନା କରିବାରେ କେନ୍ଦ୍ର କମିଟି ସକ୍ଷମ ହୋଇପାରି ନାହିଁ। ପଲିଟ୍‌ବ୍ୟୁରୋ ଓ କେନ୍ଦ୍ର କମିଟିଙ୍କର ଏହି ବିଫଳତାକୁ ଦୂର କରିବାକୁ ଏବେ ଉଦ୍ୟମ ହୋଇଛି। ଏହି ଦୀର୍ଘ ଦିନର ବିଳମ୍ବ ଯୋଗୁ ୧୯୮୩ ଦଲିଲ ପରବର୍ତ୍ତୀ ୧୯ ବର୍ଷ କାଳ କାମର ପୁଙ୍ଖାନୁପୁଙ୍ଖ ପର୍ଯ୍ୟାଲୋଚନା କରିବା କଷ୍ଟକର। ଆନ୍ତର୍ଜାତୀୟ ଓ ଜାତୀୟ କ୍ଷେତ୍ରରେ ୧୯୮୦ ଦଶକଠାରୁ ସଂପୂର୍ଣ୍ଣ ଭିନ୍ନ ଏକ ପରିସ୍ଥିତି କିପରି ବିଗତ ଦଶନ୍ଧିରେ ଦେଖା ଦେଇଛି ତାକୁ ହିସାବକୁ ନେଇ ମୁଖ୍ୟ ପରିବର୍ତ୍ତନ ଗୁଡ଼ିକ ଏଠାରେ କଳନା କରାଯାଇଛି। ଏହି ପରିବର୍ତ୍ତନ ଗୁଡ଼ିକ ଶ୍ରମିକ ଶ୍ରେଣୀ ଆନ୍ଦୋଳନକୁ ବିଶେଷଭାବେ ପ୍ରଭାବିତ କରିଛି। ସେଗୁଡ଼ିକୁ ହିସାବକୁ ନନେଇ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଆଗରେ ଥିବା ସମସ୍ୟା ଗୁଡ଼ିକର ଆଲୋଚନା ସମ୍ଭବ ନୁହେଁ। ଆମ ଟ୍ରେଡ଼ ୟୁନିୟନ କାମରେ ପରିବର୍ତ୍ତନ ଆଣିବା ଲାଗି ଏହା ପ୍ରୟୋଜନ।

## ୨. ୧୯। ୩ ପରଠାରୁ ପ୍ରଧାନ ପରିବର୍ତ୍ତନ ସମୂହ

୧୯୮୦ ଦଶକର ଶେଷ ଭାଗ ଓ ୧୯୯୦ ଦଶକ କାଳରେ ସାମ୍ରାଜ୍ୟବାଦ୍ ଓ ପଂଜିବାଦର ପ୍ରବଳ ଆକ୍ରମଣ ଦେଖା ଦେଲା। ସୋଭିଏତ୍ ୟୁନିୟନ ଭାଙ୍ଗିଯିବା ସହ ସମାଜବାଦୀ ବ୍ୟବସ୍ଥାର ବିପର୍ଯ୍ୟୟ ବେଳୁ ଏହା ଆହୁରି ବଢ଼ି ଚାଲିଲା। ଜଗତିକରଣର ନବ୍ୟ-ଉଦାରବାଦୀ ଆକ୍ରମଣ ସହ ଆମେରିକା ସାମ୍ରାଜ୍ୟବାଦ ତାର ସାମରିକ ଶକ୍ତିକୁ ବ୍ୟବହାର କରି ପଦକ୍ଷେପମାନ ନେଲା। ଆନ୍ତର୍ଜାତୀକ ମୁଦ୍ରାପାଣ୍ଠି, ବିଶ୍ୱବ୍ୟାଙ୍କ ଓ ବିଶ୍ୱବାଣିଜ୍ୟ ସଂଗଠନଙ୍କ ମାଧ୍ୟମରେ ପୃଥିବୀ ସାରା ଉଦାରୀକରଣ-ଘରୋଇକରଣ ଅଭିଯାନ ଶିଳ୍ପଜଗତକୁ ବିଶେଷଭାବେ ପ୍ରଭାବିତ କଲା। ତାଫଳରେ ଶ୍ରମିକ ଶ୍ରେଣୀ ଓ ଟ୍ରେଡ଼ ୟୁନିୟନ ଆନ୍ଦୋଳନର ବହୁ କ୍ଷତି ହେଲା। ଭାରତବର୍ଷରେ ଉଦାରୀକରଣ ନୀତି ଆଡ଼କୁ ପରିବର୍ତ୍ତନ ଏବଂ ଅର୍ଥନୀତି କ୍ଷେତ୍ରରୁ ରାଷ୍ଟ୍ରର ଭୂମିକା ହ୍ରାସ ଫଳରେ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ନୂଆ ନୂଆ ସମସ୍ୟାବଳୀର ସମ୍ମୁଖୀନ ହେଲା। ପୁଂଜିବାଦୀ ବିକାଶ ଲାଗି ଅତୀତର ଅନୁସରଣ କରାଯାଇଥିବା ପଥଠାରୁ ବିଗତ ଦଶନ୍ଧିର ଉଦାରୀକରଣ ନୀତି ସଂପୂର୍ଣ୍ଣ ଭିନ୍ନ। ଭାରତ ବର୍ଷ ସମେତ ବିକାଶଶୀଳ ଦେଶମାନଙ୍କ ଉପରେ ଯେଉଁ ଉଦାରୀକରଣ ଓ ଢ଼ାଞ୍ଚା ପରିବର୍ତ୍ତନର କାର୍ଯ୍ୟକ୍ରମ ଲଦି ଦିଆଗଲା ତାର ପରିଣତି ହେଲା ନିମ୍ନ ରୂପେ :-

- ରାଷ୍ଟ୍ରାୟତ ସଂସ୍ଥା ଗୁଡ଼ିକର ମୂଲ୍ୟବାନ ସମ୍ପତ୍ତି ସବୁ ଘରୋଇକରଣ କରିବା ଏବଂ ସର୍ବସାଧାରଣ କ୍ଷେତ୍ର ଗୁଡ଼ିକରେ ପୁଂଜି ନିବେଶ ହ୍ରାସ।
- ମଜୁରୀ ବାବଦ ଖର୍ଚ୍ଚ କମାଇବା ପାଇଁ ଶ୍ରମିକ ସଂଖ୍ୟା ହ୍ରାସ।
- ରୁଗ୍ଣ ଓ କ୍ଷତି ହେଉଥିବା ସଂସ୍ଥା ଗୁଡ଼ିକୁ ବହୁ ସଂଖ୍ୟାରେ ବନ୍ଦ କରିଦେବା ଫଳରେ ମନ୍ଥର ଅର୍ଥନୈତିକ ବିକାଶ।
- ବିକାଶଶୀଳ ଦେଶ ଗୁଡ଼ିକରେ ବହୁଜାତୀକ ସଂସ୍ଥା ଗୁଡ଼ିକର ସ୍ୱାଧୀନ ପ୍ରବେଶ।
- ରପ୍ତାନୀ-ବିକାଶ ଅଞ୍ଚଳମାନ ଗଢ଼ି ଉଠିଲା। ସେଠାରେ ଶ୍ରମ ଆଇନ୍ ଲାଗୁ ହେଉନାହିଁ ଓ ଶ୍ରମିକମାନଙ୍କ ଅବସ୍ଥା ଖରାପ ହେଉଛି।
- ତଥା କଥିତ ଭି.ଆର.ଏସ୍ ବା ସ୍ୱେଚ୍ଛାକୃତ ଅବସର ଯୋଜନା ମାଧ୍ୟମରେ ବ୍ୟାପକ ଶ୍ରମିକ ଛଟେଇ।

- ଶ୍ରମିକମାନଙ୍କ କାର୍ଯ୍ୟ କ୍ଷେତ୍ର ଓ ରହିବା କ୍ଷେତ୍ରରେ ଥିବା ସୁବିଧା ସୁଯୋଗ ଓ ସାମାଜିକ ନିରାପତ୍ତା ଆଦି ବିଶେଷ ଭାବେ ଛଡ଼ାଇ ନେବା।
- କ୍ଷୁଦ୍ର ଓ ପାରମ୍ପରିକ ଶିଳ୍ପଗୁଡ଼ିକର ଧ୍ୱଂସ ସାଧନ ଫଳରେ ଜନସାଧାରଣଙ୍କ ନିଃସ୍ୱତା।
- ଶ୍ରମ ଆଇନ୍‌ର ସଂଶୋଧନ ଜରିଆରେ ଟ୍ରେଡ଼ ୟୁନିୟନ ଓ ଗଣତାନ୍ତ୍ରିକ ଆନ୍ଦୋଳନ ଉପରେ ଆଘାତ।
- ବିଶ୍ୱ ବାଣିଜ୍ୟ ସଂଗଠନ ଗଢ଼ି ଉଠିବା ଫଳରେ ବାଣିଜ୍ୟର ସର୍ତ୍ତଗୁଡ଼ିକ ବିକାଶଶୀଳ ଦେଶଙ୍କ ବିରୁଦ୍ଧରେ ପରିଚାଳିତ ହେଲା ଏବଂ ପେଟେଣ୍ଟ ବ୍ୟବସ୍ଥାରେ ମଧ୍ୟ ପରିବର୍ତ୍ତନ ଘଟିଲା।
- ବିଦେଶରୁ ଆମଦାନୀ କ୍ଷେତ୍ରରେ ଥିବା ପରିମାଣଗତ କଟକଣା ସବୁ ଉଠାଇ ନେବା ଫଳରେ ବିକାଶଶୀଳ ଦେଶ ଗୁଡ଼ିକର ବଜାରରେ ବିଦେଶୀ ଦ୍ରବ୍ୟ ସବୁ ଜମା ହେବାରେ ଲାଗିଛି।

ବିଂଶ ଶତାବ୍ଦୀର ଶେଷ ଭାଗରେ ବିଶ୍ୱ ପୁଂଜିବାଦୀ ବ୍ୟବସ୍ଥାରେ ଘଟିଥିବା ପରିବର୍ତ୍ତନ ଏବଂ ସାମ୍ରାଜ୍ୟବାଦୀଙ୍କ ପରିଚାଳିତ ଜଗତିକରଣର ଅଭ୍ୟୁଦୟ ଫଳରେ ସଂପୂର୍ଣ୍ଣଭାବେ ଏକ ପରିବର୍ତ୍ତିତ ପରିସ୍ଥିତି ସୃଷ୍ଟି ହୋଇଛି। ଏହାଫଳରେ ଆଗୁଆ ପୁଂଜିବାଦୀ ଦେଶ ତଥା ତୃତୀୟ ବିଶ୍ୱର ଦେଶମାନଙ୍କରେ ଶ୍ରମିକ ଶ୍ରେଣୀ ଉପରେ ସବୁ ଦିଗରୁ ଆଘାତ ଆସିଛି। ସାଂପ୍ରତିକ କାଳ ପୁଂଜିବାଦର ବିଶ୍ଳେଷଣ ଭିତରକୁ ନଯାଇ ମଧ୍ୟ କୁହାଯାଇପାରିବ ଯେ, ଶ୍ରମିକମାନଙ୍କ ଉପରକୁ ଏବେ ଅଭୂତପୂର୍ବ ଆକ୍ରମଣ ନଇଁ ଆସିଛି। ଶିଳ୍ପର ପୁର୍ନବିନ୍ୟାସ, ଆଗୁଆ କାରିଗରୀ ବିଦ୍ୟାର ନୂଆ କ୍ଷେତ୍ର ସବୁର ବିକାଶ, ସୀମା ଅତିକ୍ରମ କରି ଉତ୍ପାଦନର ଅଭିବୃଦ୍ଧି ଇତ୍ୟାଦି ଫଳରେ ଶିଳ୍ପ-ହୀନତା ଦେଖା ଦେଇଛି। ଏହି ପ୍ରକ୍ରିୟା ସ୍ଥାୟୀ ନିଯୁକ୍ତି ବିପୁଳ ଭାବେ ହ୍ରାସ କରି ଅସ୍ଥାୟୀ ଠିକା ଶ୍ରମର ପ୍ରଚଳନ କରିଛି। କଷ୍ଟାର୍ଜିତ ଟ୍ରେଡ଼ ୟୁନିୟନ ଅଧିକାର ଗୁଡ଼ିକ ଆଜି ଗୁରୁତର ଭାବେ ଆକ୍ରାନ୍ତ ଏବଂ ଶ୍ରମିକମାନଙ୍କ କାମ କରିବା ଓ ଜୀବନ ଧାରଣ କରିବାର ଅବସ୍ଥା ସଂପର୍କରେ ନୂତନ ଭାବେ ସଜ୍ଞା ନିରୂପଣ କରାଯାଉଛି। ଏହି ପ୍ରକାର ଏକ ବିଶ୍ୱବ୍ୟାପୀ ଆକ୍ରମଣବେଳେ ଜଗତୀକରଣ-ଉଦାରୀକରଣ ପ୍ରକ୍ରିୟାରେ କ୍ଷତିଗ୍ରସ୍ତ ସମସ୍ତଙ୍କର ବ୍ୟାପକ ଏକତା ଗଢ଼ି ତୋଳିବା ପ୍ରୟୋଜନ। ଟ୍ରେଡ଼ ୟୁନିୟନ ଆନ୍ଦୋଳନକୁ ସଂଗଠିତ ଶିଳ୍ପ ପରିସର ବାହାରେ ଥିବା ଅସଂଗଠିତ କ୍ଷେତ୍ର ଓ ପରିସେବା କ୍ଷେତ୍ରର ଶ୍ରମଜୀବୀ ଓ ଶ୍ରମଜୀବୀ ମହିଳାଙ୍କ ସମେତ ସବୁ ଅଂଶର ଶ୍ରମଜୀବୀ ଲୋକଙ୍କୁ ସମବେତ କରିବାକୁ ହେବ। ଫଳପ୍ରଦ ପ୍ରତିରୋଧ ପାଇଁ ପ୍ରୟୋଜନ ଶ୍ରମିକ ଶ୍ରେଣୀ ଓ ଗ୍ରାମାଞ୍ଚଳର ଶ୍ରମଜୀବୀ ଜନଗଣଙ୍କ ଐକ୍ୟବଦ୍ଧ ତଥା ଲଗାତର ଆନ୍ଦୋଳନ।

ଶ୍ରମିକ ଶ୍ରେଣୀ ଉପରେ ନଇଁ ଆସିଥିବା ଆକ୍ରମଣ ବିରୁଦ୍ଧରେ ଗୋଟିଏ କୌଣସି ଶିଳ୍ପ ବା କ୍ଷେତ୍ରରେ କେବଳ ଲଢ଼ି ହେବ ନାହିଁ। ନୂଆ ନୂଆ ସମସ୍ୟାବଳୀର ସମ୍ମୁଖୀନ ହେବା ପାଇଁ ଯଥାର୍ଥ ବ୍ୟବସ୍ଥା ଗ୍ରହଣ ପ୍ରୟୋଜନ। ଏହି ଆକ୍ରମଣର ସମ୍ମୁଖୀନ ହେବା ପାଇଁ ଏକ ଶକ୍ତିଶାଳୀ ସାରାଭାରତ ଆନ୍ଦୋଳନ ଗଢ଼ିତୋଳିବାକୁ ସି.ଆଇ.ଟି.ୟୁ.ର ଉଦ୍ୟମ ଯଥାର୍ଥ। ଏହି ନୀତି ଗୁଡ଼ିକ ବିରୁଦ୍ଧରେ ଦେଶବ୍ୟାପୀ ଟ୍ରେଡ଼ ୟୁନିୟନ ଏକତା ପ୍ରତିଷ୍ଠା କରିବା ହେଉଛି ଏହି ଆନ୍ଦୋଳନର ଚାବିକାଠି। ସ୍ପନ୍‌ସରିଂ କମିଟି ବା ଗଣସଂଗଠନମାନଙ୍କ ଜାତୀୟ ମଂଚ ପରି ମିଳିତ ମଞ୍ଚରୁ ୬ ଗୋଟି ସାରାଭାରତ ଧର୍ମଘଟ ପରିଚାଳିତ ହେବା, ସେହି ଉଦ୍ୟମର ଫଳଶ୍ରୁତି। ଘରୋଇକରଣ

କରବା ଓ ରାଷ୍ଟ୍ରାୟତ ସଂସ୍ଥାକୁ ଉଜାଡ଼ି ଦେବାର ଅଭିଯାନକୁ ବାଧାଦେବା ପାଇଁ ଅନେକ ଗୁଡିଏ ପ୍ରତିବାଦ କାର୍ଯ୍ୟକ୍ରମ ଓ ଲଗାତର ଆନ୍ଦୋଳନ ପରିଚାଳିତ ହୋଇଛି। ବୀମା କ୍ଷେତ୍ରକୁ ଘରୋଇ ସଂସ୍ଥାଙ୍କ ପାଇଁ ମୁକ୍ତ କରିଦେବା ବିରୁଦ୍ଧରେ ନିରବଚ୍ଛିନ୍ନ ଲଢ଼େଇ ହେଉଛି ତାର ଏକ ନିଦର୍ଶନ। ବୀମା କ୍ଷେତ୍ରରେ ଉଦାରୀକରଣ ବ୍ୟବସ୍ଥା ପାଇଁ କଂଗ୍ରେସ ଓ ବି.ଜେ.ପି. ଏକାଠି ହୋଇ ୧୯୯୮ରେ ତାହା କରିପାରିଲେ।

ଆମ ପାର୍ଟି ସାଥୀମାନେ କାମ କରୁଥିବା ସ୍ୱାଧୀନ ଫେଡ଼େରେସନ୍ ଏବଂ ସି.ଆଇ.ଟି.ୟୁ.ର ସଂଗ୍ରାମ ଓ ଉଦ୍ୟମଶୀଳତା ଯୋଗୁ ଏହି ନୀତି ଗୁଡିକ ବିରୋଧରେ ପ୍ରତିରୋଧ ବ୍ୟାପକ ଓ ତୀବ୍ର ହୋଇପାରିଛି।

୧୯୮୦ରୁ ୧୯୯୦ ଦଶନ୍ଧି ଧରି ସମସ୍ତ ଆଗୁଆ ପୁଂଜିବାଦୀ ଦେଶମାନଙ୍କରେ ଟ୍ରେଡ୍ ୟୁନିୟନ୍ ଆନ୍ଦୋଳନକୁ ଅତ୍ୟନ୍ତ ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହେବାକୁ ପଡିଛି। ଟ୍ରେଡ଼ ୟୁନିୟନ ସଭ୍ୟ ସଂଖ୍ୟା ହ୍ରାସ ପାଇବା ସହିତ ସେମାନଙ୍କ ଆଘାତ କରିବା କ୍ଷମତା ମଧ୍ୟ ହ୍ରାସ ପାଇଲା। ଏହି ପ୍ରତିକୂଳ ପରିବେଶ ଦ୍ୱାରା ଭାରତବର୍ଷର ଟ୍ରେଡ଼ ୟୁନିୟନ ଆନ୍ଦୋଳନ କ୍ଷତି ସହିଲା। ଏହି ପ୍ରତିକୂଳ ପରିସ୍ଥିତିକୁ ଅତ୍ୟନ୍ତ ଦୃଢ଼ ପରିକର ଭାବେ ସି.ଆଇ.ଟି.ୟୁ. ସାମନା କରିଥିଲା। ଆନ୍ତର୍ଜାତିକ ସ୍ତରରେ ପୁଂଜିବାଦୀ ଆକ୍ରମଣ ଓ ଜାତୀୟ କ୍ଷେତ୍ରରେ ତାର ପ୍ରଭାବ ଯୋଗୁ ଯେଉଁ ସମସ୍ୟା ସବୁର ଉଦ୍‌ଭବ ହେଲା, ପାର୍ଟି ତାହା ଯଥାର୍ଥଭାବେ ବୁଝିବା ପ୍ରୟୋଜନ। ଏହି ନୂତନ ପରିସ୍ଥିତିର ମୁକାବିଲା ଆମକୁ ଫଳପ୍ରଦ ଭାବେ କରିବାକୁ ପଡ଼ିଛି। ବର୍ତ୍ତମାନର ଆତ୍ମରକ୍ଷାମୂଳକ ସ୍ତରରୁ ପାହାଚ ପାହାଚ ଦେଇ ଉପରକୁ ଉଠି ହରାଇଥିବା ଇଲାକା ଫେରି ପାଇବା ସହିତ ଆକ୍ରମଣାତ୍ମକ ସ୍ତରକୁ ଆମେ ଯିବାକୁ ଚାହୁଁ। ଟ୍ରେଡ଼ ୟୁନିୟନ ନେତୃତ୍ୱର ଏକ ଅଂଶ ଉଦାରୀକରଣ ଅଭିଯାନ ସହିତ ଯେପରି ସାଲିସ୍ କରିବାକୁ ବସିଛି ତାହା ବିରୁଦ୍ଧରେ ସଂଗ୍ରାମ ପ୍ରୟୋଜନ। କୌଣସି ଏକ କ୍ଷେତ୍ରରେ ଗୋଟିଏ ବିଶେଷ ଲଢ଼େଇ ସାଫଲ୍ୟ ଅର୍ଜନ କରିନପାରିଲେ ହେଁ, ପ୍ରତିରୋଧର ସମଗ୍ର ପ୍ରକ୍ରିୟାରେ ତାର ଅବଦାନ ଦେଇଥାଏ। ଶ୍ରମିକ ବିରୋଧୀ ଓ ଜନ-ବିରୋଧୀ ନୀତି ଗୁଡିକ ଦ୍ୱାରା କ୍ଷତିଗ୍ରସ୍ତ ହେଉଥିବା ସକଳ ଅଂଶର ଜନଗଣଙ୍କୁ ନେଇ ଶକ୍ତିଶାଳୀ ତଥା ବହୁମୁଖୀ ସଂଗ୍ରାମ ଗଢ଼ିତୋଳିବା ଏକ ଅତ୍ୟନ୍ତ ପ୍ରୟୋଜନୀୟ କାର୍ଯ୍ୟ।

## ୩. ସାଂପ୍ରଦାୟିକତାବାଦର ବିପଦ

ସାଂପ୍ରଦାୟିକ ଶକ୍ତି ସମୂହ ୮୦ ଓ ୯୦ ଦଶକ କାଳରୁ ଉଗ୍ର ଆତ୍ମଭିମାନୀ ମନୋଭାବ ସୃଷ୍ଟି କରି ଲୋକଙ୍କୁ ନିଜପଟକୁ ନେବାରେ ଲାଗିଛନ୍ତି। ଆର୍.ଏସ୍.ଏସ୍. ଓ ତାର ଅନ୍ୟାନ୍ୟ ସଂଗଠନମାନେ ସେମାନଙ୍କ ନାଜିବାଦୀ ମତାଦର୍ଶ ସପକ୍ଷରେ ଖୋଲା ଖୋଲି ଭାବେ ପ୍ରଚାର କରି ଆସୁଛନ୍ତି ଏବଂ ଭାରତବର୍ଷରେ ଏକ ହିନ୍ଦୁ-ରାଷ୍ଟ୍ର ପ୍ରତିଷ୍ଠା ପାଇଁ ଯୁକ୍ତି ବାଢୁଛନ୍ତି। କେତେକ ଧର୍ମନିରପେକ୍ଷ ସୁବିଧାବାଦୀ ଦଳଙ୍କ ସହଯୋଗ ନେଇ କେନ୍ଦ୍ରରେ ବି.ଜେ.ପି. ସରକାର ଗଢ଼ିବା ପରଠାରୁ ପ୍ରଶାସନ ବିଚାର ବିଭାଗ ଓ ସାମରିକ ବାହିନୀ ସମେତ ରାଷ୍ଟ୍ରଯନ୍ତ୍ରର ସକଳ କ୍ଷେତ୍ରରେ ଅନୁପ୍ରବେଶ କରିବାକୁ ଆର୍.ଏସ୍.ଏସ୍. ସୁପରିକଳ୍ପିତ ଉଦ୍ୟମ ଚଳାଇଛି। ଏହି ପ୍ରତିକ୍ରିୟାଶୀଳ ଓ ବିଭାଜନକାରୀ ଶକ୍ତିକୁ ଶ୍ରମିକଶ୍ରେଣୀ ଭିତରେ ମୁକାବିଲା କରାଯିବା କାମକୁ ଅଗ୍ରାଧିକାର ସହ ହାତକୁ ନେବାକୁ ପଡିବ।

ଦେଶର ସହରାଞ୍ଚଳର ବହୁ ଶ୍ରମିକ ଶ୍ରେଣୀ କେନ୍ଦ୍ରରେ ବି.ଜେ.ପି. ଜୟଲାଭ କରିଥିବା ବିଷୟ ୯୦ ଦଶକର ନିର୍ବାଚନ ପର୍ଯ୍ୟାଲୋଚନା ଉଲ୍ଲେଖ କରିଥିଲା। ସାଂପ୍ରଦାୟିକ ଦୃଷ୍ଟୀଭଙ୍ଗୀ

ଓ ମତାଦର୍ଶ ଶ୍ରମିକ ଶ୍ରେଣୀ ଭିତରକୁ ମଧ୍ୟ ପ୍ରବେଶ କରିଛି। ତାହା ଅବଶ୍ୟ ବିଭିନ୍ନ ସ୍ଥାନରେ ଅଳ୍ପ ବା ବେଶି ହୋଇପାରେ। ଶ୍ରମିକ ଶ୍ରେଣୀ ଭିତରକୁ ଥରେ ସାଂପ୍ରଦାୟିକ ମତାଦର୍ଶ ପ୍ରବେଶ କଲେ ତାହା ଦୂର କରି ଧର୍ମନିରପେକ୍ଷ ଗଣତାନ୍ତ୍ରିକ ଚେତନା ପ୍ରତିଷ୍ଠାପାଇଁ ଏକ ଦୀର୍ଘ ସଂଗ୍ରାମ କରିବାକୁ ପଡ଼େ।

ମୁମ୍ବାଇର ଏକ ବଡ଼ ଅଂଶର ଶ୍ରମିକମାନଙ୍କ ଉପରେ ଶିବସେନା ପ୍ରଭାବ ବିସ୍ତାର କରି ରହିଛି। ଗୁଜୁରାଟରେ ହିନ୍ଦୁତ୍ୱ-ଶକ୍ତିମାନେ ସାଂପ୍ରଦାୟିକତାର ବିଷରେ ସମଗ୍ର ପରିବେଶକୁ ଏପରି ଜର୍ଜରିତ କରିଛନ୍ତି ଯେ, ବିଗତ ସାଂପ୍ରଦାୟିକ ଗଣହତ୍ୟା ବେଳେ ବାମପନ୍ଥୀ ଓ ଧର୍ମନିରପେକ୍ଷ ଶକ୍ତିମାନେ ପୁରାପୁରି ନଗଣ୍ୟ ଅପ୍ରାସଙ୍ଗିକ ହୋଇଯାଇଥିବା ଦେଖା ଯାଇଥିଲା। ୮୦ ଶଦକରେ ବସ୍ତ୍ର ଶିଳ୍ପ ଗୁଡ଼ିକ ବନ୍ଦ ହୋଇଯିବା ଯୋଗୁ ଅହମଦାବାଦ୍‌ରେ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଦୁର୍ବଳ ହୋଇଯାଇ ହିନ୍ଦୁ ଓ ମୁସଲମାନ ଶ୍ରମିକମାନଙ୍କ ଭିତରେ ଥିବା ସମ-ସ୍ୱାର୍ଥର ବନ୍ଧନକୁ ଭାଙ୍ଗି ଦେଇଥିଲା। ଉଦାରୀକରଣ ନୀତି ବିରୁଦ୍ଧରେ ସଂଗ୍ରାମ ପ୍ରତିକ୍ରିୟାଶୀଳ ସାମ୍ପ୍ରଦାୟୀକ ଶକ୍ତିମାନଙ୍କ ବିରୁଦ୍ଧରେ ଲଢ଼େଇ ଏବଂ ଶ୍ରମିକମାନଙ୍କୁ ଭାଗ ଭାଗ କରି ବିଭେଦଗ୍ରସ୍ତ କରିବା ବିରୁଦ୍ଧରେ ଲଢ଼େଇକୁ ଏକ ସଂଗେ ଚଳାଇ ଯିବାକୁ ହେବ। ଉଦାରୀକରଣ ବିରୋଧରେ ଲଢ଼େଇକୁ ଟ୍ରେଡ଼ ୟୁନିୟନ ପରିଚାଳନା କରିବ ଓ ସାଂପ୍ରଦାୟିକତା ବିରୁଦ୍ଧରେ ସଂଗ୍ରାମକୁ ପାର୍ଟି ପରିଚାଳିତ କରିବ- ଏପରି ହୋଇପାରେନା। ଏଥିରେ ସନ୍ଦେହ ନାହିଁ ଯେ, ଅର୍ଥନୈତିକ ପ୍ରଶ୍ନ ଓ ଶ୍ରମିକମାନଙ୍କ ସ୍ୱାର୍ଥ ବିରୁଦ୍ଧରେ ଯାଉଥିବା ଅର୍ଥନୈତିକ ନୀତି ଗୁଡ଼ିକ ବିରୋଧରେ ସଂଗାମ ଉପରେ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଭିତ୍ତି କରିଥାଏ। କିନ୍ତୁ ସାଂପ୍ରଦାୟିକ ଶକ୍ତି ଓ ତାଙ୍କର ପ୍ରତିକ୍ରିୟାଶୀଳ ମତାଦର୍ଶ ବିରୋଧରେ ସଂଗ୍ରାମରେ ଶ୍ରମିକ ଶ୍ରେଣୀ ପ୍ରତ୍ୟକ୍ଷ ଭାବେ ସକ୍ରିୟ ନହେଲେ ସେମାନଙ୍କ ଭିତରେ ଆମେ ଚାହୁଁଥିବା ରାଜନୈତିକ ଚେତନା କେବେ ହେଁ ଆସିବ ନାହିଁ। ଏପରିକି ଅର୍ଥନୈତିକ ପ୍ରଶ୍ନ ଉପରେ ମଧ୍ୟ ଶ୍ରମିକ ଶ୍ରେଣୀର ସ୍ୱାର୍ଥକୁ ଆଘାତ କରୁଥିବା ନୀତି ସବୁ ଲଦି ଦେବାକୁ ଶାସକ ଦଳ ସକ୍ଷମ ହୋଇଛି। ତାହା ଆର୍.ଏସ୍.ଏସ୍. ନୀତି ସହ ସାମଞ୍ଜସ୍ୟପୂର୍ଣ୍ଣ।

ରାଜନୈତିକ ପରିସ୍ଥିତିର ବିଶ୍ଳେଷଣ କଲାବେଳେ ସାଂପ୍ରଦାୟିକ ଶକ୍ତିଙ୍କ ବୃଦ୍ଧିର ବିପଦଜନକ ତାତ୍ପର୍ଯ୍ୟ ସି.ଆଇ.ଟି.ୟୁ.ର ଦଲିଲ ଗୁଡ଼ିକରେ ଯଥାର୍ଥ ଭାବେ ଦର୍ଶାଜାଇ ନଥାଏ। ଏବେ କେତେବର୍ଷ ହେଲା ଓ ବିଶେଷତଃ ବି.ଜେ.ପି. କ୍ଷମତାସୀନ ହେଲାପରେ ଅବଶ୍ୟ ସାଂପ୍ରଦାୟିକତାବାଦର ବିପଦ ବିଷୟ ସି.ଆଇ.ଟି.ୟୁ. ବିଶେଷଭାବେ ଦର୍ଶାଇଛି। କେତେକ ଅଞ୍ଚଳରେ ଶ୍ରମିକ ଶ୍ରେଣୀର ଏକ ଅଂଶକୁ ସାଂପ୍ରଦାୟିକ ମତାଦର୍ଶ ଜୟ ଲାଭ କରିଥିବା ବେଳେ ତାହା କିପରି ଘଟିଲା ଓ ଶ୍ରମିକ ଶ୍ରେଣୀର ଏକତାକୁ ବିଭେଦଗ୍ରସ୍ତ କରି ପ୍ରତିକ୍ରିୟାଶୀଳ ଶକ୍ତିମାନେ ଶ୍ରମିକମାନଙ୍କ ଉପରେ କିପରି ପ୍ରଭାବ ବିସ୍ତାର କରିଛନ୍ତି ତାହାର ଯଥାର୍ଥ କଳନା କରାଯାଇ ନାହିଁ ଏବଂ ସେଥିପ୍ରତି ଯଥାର୍ଥ ଗୁରୁତ୍ୱ ଦିଆଯାଇନାହିଁ। ସି.ଆଇ.ଟି.ୟୁ.ର ପ୍ରଚାର ଅଭିଜାନରେ ନିର୍ଦ୍ଦିଷ୍ଟ ଭାବେ ରାଜନୈତିକ-ମତାଦର୍ଶଗତ ସ୍ୱରୂପ ଉଦ୍‌ଘାଟନ ଦେଖିବାକୁ ମିଳେନା। ସେଥିରେ ଆର୍.ଏସ୍.ଏସ୍. ଓ ଶ୍ରମିକ ଶ୍ରେଣୀ ଭିତରେ ଥିବା ଅନ୍ୟାନ୍ୟ ସାଂପ୍ରଦାୟିକ ସଂଗଠନମାନଙ୍କ କାର୍ଯ୍ୟକଳାପ ଉପରେ ମଧ୍ୟ ଆଘାତ ନଥାଏ। ଉଦାହରଣ ସ୍ୱରୂପ ବି.ଏମ୍.ଏସ୍. ଶ୍ରମିକ ଶ୍ରେଣୀ ଭିତରେ ସାଂପ୍ରଦାୟିକ ମତାଦର୍ଶର ପ୍ରସାର ଘଟାଇଥାଏ। ଆର୍.ଏସ୍.ଏସ୍.ର ଏକ ସଂଗଠନ ଭାବେ ଏହା ଶ୍ରମିକମାନଙ୍କ ଭିତରକୁ ଆର୍.ଏସ୍.ଏସ୍.ର ଦୃଷ୍ଟିଭଙ୍ଗୀ ବହନ କରି ନେଇଥାଏ। ମାତ୍ର ୱାର୍କିଂ-କ୍ଲାସ୍ ସମେତ ସି.ଆଇ.ଟି.ୟୁ.ର ସକଳ ପ୍ରଚାର ସାହିତ୍ୟ ଏ ବିଷୟରେ ନୀରବ। ସାଂପ୍ରଦାୟିକ ମତାଦର୍ଶ କିପରି

କାମ କରୁଛି ଏବଂ ଶ୍ରମିକ ଶ୍ରେଣୀଙ୍କୁ ତାହା କିପରି ପ୍ରଭାବିତ କରୁଛି ସେ ବିଷୟରେ ନିର୍ଦ୍ଦିଷ୍ଟ ଭାବେ ବର୍ଣ୍ଣନା କରାଯାଇ ତାର ସ୍ୱରୂପ ଉଦ୍‌ଘାଟନ କରାଯାଇ ନଥାଏ। ଏସବୁ ପ୍ରଶ୍ନ ଉପରେ ବି.ଏମ୍.ଏସ୍. ର ମୁକାବିଲା କରିବାରେ କୌଣସି ଦ୍ୱିଧା ରହିବା କଥା ନୁହେଁ। ସାମ୍ପ୍ରଦାୟିକତା ବିରୁଦ୍ଧରେ ଅଭିଯାନ ଚଳାଇବା ପାଇଁ ଏନ୍.ପି.ଏମ୍.ଓ. ୨୦୦୨ ଅଗଷ୍ଟରେ ନିଷ୍ପତ୍ତି ନେଇଥିଲା। ଏଥିରେ ପୂର୍ଣ୍ଣପ୍ରାଣରେ ଲାଗିବାପାଇଁ ପାର୍ଟିର ନିଷ୍ପତ୍ତି ସତ୍ତ୍ୱେ ଅନେକ ରାଜ୍ୟରେ ଟ୍ରେଡ୍ ୟୁନିୟନମାନେ ତାହା କାର୍ଯ୍ୟକାରୀ କରିନଥିଲେ। ଏ ଲଢ଼େଇରେ ଥିବା ଦୁର୍ବଳତା ପ୍ରତି ଏହା ଅଙ୍ଗୁଳି ନିର୍ଦ୍ଦେଶ କରେ।

ଶ୍ରମିକ ଶ୍ରେଣୀ ଭିତରେ ସାମ୍ପ୍ରଦାୟିକ ଶକ୍ତିଙ୍କ ମୁକାବିଲା କରିବା ବିଷୟ ପ୍ରତି ଆମକୁ ବିଶେଷ ଯୋର ଦେବାକୁ ହେବ। ସେଥିପାଇଁ ନିମ୍ନଲିଖିତ କାର୍ଯ୍ୟଗୁଡ଼ିକ କରିବାକୁ ପଡ଼ିବ।

- ସାଂପ୍ରଦାୟିକ ସଂଗଠନମାନଙ୍କ ବିଭେଦକାରୀ ଓ ପ୍ରତିକ୍ରିୟାଶୀଳ ଚରିତ୍ରକୁ ସାଧାରଣ ଶ୍ରମିକ ବୁଝିବା ପରି ସରଳ ଭାଷାରେ କେତେକ ସାହିତ୍ୟ ପ୍ରସ୍ତୁତ କରିବାକୁ ପଡ଼ିବ।
- ଏହି ପ୍ରଚାରକୁ ଶ୍ରମିକମାନଙ୍କ ଭିତରକୁ କିପରି ନେଇ ଯିବାକୁ ହେବ ସେ ବିଷୟରେ ପାର୍ଟି ସାଥୀମାନଙ୍କ କର୍ମଶାଳାମାନ ସଂଗଠିତ କରିବାକୁ ପଡ଼ିବ।
- ସାଂପ୍ରଦାୟିକ ସଂଗଠନମାନ କାମ କରୁଥିବା ଶ୍ରମିକ ବସ୍ତି ଗୁଡ଼ିକରେ ଶ୍ରମିକ ପରିବାର ବର୍ଗଙ୍କୁ ଆକୃଷ୍ଟ କଲାପରି ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମମାନ ଟ୍ରେଡ୍ ୟୁନିୟନମାନଙ୍କୁ ନେବାକୁ ପଡ଼ିବ।
- ସାଂପ୍ରଦାୟିକ ଶକ୍ତିମାନଙ୍କ ବିରୁଦ୍ଧରେ ଲଢ଼ାଇ ପାଇଁ ଜାଲ ବିଛାଇଲା ପରି କାର୍ଯ୍ୟକ୍ରମମାନ କିପରି ନେବାକୁ ହେବ, କେଉଁ ଅଞ୍ଚଳରେ କିପରି ଯୋର ଦିଆଯିବ ତାହା ପାର୍ଟିର ଟ୍ରେଡ୍ ୟୁନିୟନ ସବ୍‌କମିଟି ଓ ଫ୍ରାକ୍‌ସନ୍ କମିଟିମାନେ ଆଲୋଚନା କରି ସ୍ଥିର କରିବେ।

## ୪. ଶ୍ରମିକ ଶ୍ରେଣୀଙ୍କୁ ରାଜନୈତିକ ଭାବେ ଅନୁପ୍ରାଣିତ କରିବା କାମ

୧୯୮୩ ଦଲିଲରେ ଆନ୍ଦୋଳନ ଓ ପ୍ରଚାର ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ଦର୍ଶାଯାଇଥିଲା। ୧ମଟି ହେଲା ଦୈନନ୍ଦିନ ପ୍ରଶ୍ନ ଉପରେ ଆନ୍ଦୋଳନ ଏବଂ ଅର୍ଥନୈତିକ ଓ ଆଶୁ ସମସ୍ୟା ଉପରେ ପ୍ରଚାର। ୨ୟଟି ହେଲା ଅଧିକ ମୌଳିକ ପ୍ରଶ୍ନ ଉପରେ ଅଭିଯାନ। ଆଶୁ ସମସ୍ୟାବଳୀ ଓ ପ୍ରଶ୍ନ ସବୁକୁ ଏହା ମାର୍କ୍ସବାଦୀ ନୀତି ସହିତ ସଂଯୁକ୍ତ କରେ ଏହା ପ୍ରଚଳିତ ସମାଜ ବ୍ୟବସ୍ଥା ଓ ଶାସକ ଶ୍ରେଣୀ ବିରୁଦ୍ଧରେ ସଂଗ୍ରାମ କରିବାର ଆବଶ୍ୟକତା ସଂପର୍କରେ ଶ୍ରମିକ ଶ୍ରେଣୀଙ୍କୁ ଶିକ୍ଷିତ କରେ; ଅର୍ଥାତ୍ ସମାଜବାଦୀ ଚେତନାରେ ଭୂଷିତ କରେ। ୨ୟ କାମଟିକୁ ପାର୍ଟି ପ୍ରତ୍ୟକ୍ଷ ଭାବରେ ଶ୍ରମିକମାନଙ୍କ ଭିତରେ ପରିଚାଳିତ କରିବ। ଏହା ଟ୍ରେଡ୍ ୟୁନିୟନ ମଞ୍ଚରୁ କରାଯାଇ ପାରିବ ନାହିଁ। ଏ ଦିଗରେ କେତେକ ପଦକ୍ଷେପ ନିଆଯାଇଥିଲା। ମାତ୍ର ସେ ଗୁଡ଼ିକ କାଁ ଭାଁ ଭାବରେ ହୋଇଥିଲା। ବ୍ୟାପକ ଭାବେ କରାଯାଇ ନାହିଁ।

ଟ୍ରେଡ୍ ୟୁନିୟନ ଗୁଡ଼ିକରେ କମ୍ୟୁନିଷ୍ଟ କାର୍ଯ୍ୟାବଳୀ ଏବଂ ଶ୍ରମିକ ଶ୍ରେଣୀ ଓ ସେମାନଙ୍କ ବସ୍ତି ଗୁଡ଼ିକରେ ରାଜନୈତିକ ଶିକ୍ଷାମୂଳକ ପ୍ରଚାର କାର୍ଯ୍ୟ ଏବେ ବି ଅବହେଳିତ। ଏଇ ପ୍ରକାର

ରାଜନୈତିକ କାମ ଟ୍ରେଡ଼ ୟୁନିୟନମାନଙ୍କ ଦ୍ୱାରା କରାଯାଉଛି ବୋଲି ଏକ ଧାରଣା ଏବେ ବି ଅଛି। ସାଂପ୍ରଦାୟିକତାବାଦ ଓ ଜାତିଆଣାବାଦ ଉଭୟ ବିଷୟରେ ଶ୍ରମିକମାନଙ୍କ ଭିତରେ ଆନ୍ଦୋଳନ ଓ ଶିକ୍ଷାମୂଳକ ପ୍ରଚାର ଚଳାଇବାକୁ ହେବ।

(୧) ଶ୍ରମିକ ଶ୍ରେଣୀର ରାଜନୈତିକ ଚେତନାର ବିକାଶ ପାଇଁ ପାର୍ଟିକୁ ବିଶେଷ ଭାବେ ଧ୍ୟାନ ଦେବାକୁ ପଡ଼ିବ। ସେଥିପାଇଁ ଟ୍ରେଡ଼ ୟୁନିୟନ ଫ୍ରଣ୍ଟରେ କାମ କରୁଥିବା ପାର୍ଟି ସଭ୍ୟମାନଙ୍କ ରାଜନୈତିକ ମତାଦର୍ଶଗତ ସ୍ତରକୁ ପ୍ରଥମେ ଉନ୍ନତ କରିବା ପ୍ରୟୋଜନ।

(୨) ପାର୍ଟି ଏବଂ ଟ୍ରେଡ଼ ୟୁନିୟନ ଫ୍ରଣ୍ଟ ଉଭୟେ ଶ୍ରମିକ ଶ୍ରେଣୀ ଭିତରେ ସାଂପ୍ରଦାୟିକତାବାଦ ବିରୋଧୀ ପ୍ରଚାର ଅଭିଯାନକୁ ଗରୁତ୍ୱର ସହ ପରିଚାଳିତ କରିବେ।

(୩) ସାମ୍ରାଜ୍ୟବାଦ-ବିରୋଧୀ, ସାମନ୍ତବାଦ-ବିରୋଧୀ ଗଣତାନ୍ତ୍ରିକ ପ୍ରଶ୍ନଗୁଡିକ କେବଳ ଆନୁଷ୍ଠାନିକ ଭାବେ ହାତକୁ ନିଆଯାଇଥାଏ। ଉଦାହରଣ ସ୍ୱରୂପ : ଶ୍ରମିକମାନଙ୍କୁ ଭାଗ ଭାଗ କରୁଥିବା ଜାତିଆଣ ଭାବଧାରା ବିରୁଦ୍ଧରେ କୌଣସି କାର୍ଯ୍ୟକ୍ରମ ଗୁରୁତ୍ୱର ସହ ହାତକୁ ନିଆଯାଇ ନଥାଏ। ତାମିଲନାଡୁ ଓ ଆନ୍ଧ୍ରପ୍ରଦେଶରେ ଜାତିଆଣ କୁସଂସ୍କାରକ ବିରୁଦ୍ଧରେ ନିଆଯାଇଥିବା ଉତ୍ତମ କାର୍ଯ୍ୟକ୍ରମ ପରେ ଅନ୍ୟ ରାଜ୍ୟରେ ଆମ ଟ୍ରେଡ଼ ୟୁନିୟନମାନେ ସେଠାକାର ଅବସ୍ଥା ଦୃଷ୍ଟିରୁ ଯଥାର୍ଥ କାର୍ଯ୍ୟକ୍ରମମାନ ନେବା ପ୍ରୟୋଜନ।

ଶ୍ରମିକମାନଙ୍କ କାର୍ଯ୍ୟକ୍ଷେତ୍ର ଓ ଫ୍ୟାକ୍ଟ୍ରି ବାହାରେ ମଧ୍ୟ ଟ୍ରେଡ଼ ୟୁନିୟନ ଓ ପାର୍ଟିର କାର୍ଯ୍ୟ ପରିଚାଳିତ ହେବା ଦରକାର। ଶ୍ରମିକ ସମାଜ ଓ ସେମାନଙ୍କ ପରିବାର ବର୍ଗଙ୍କୁ ଆକୃଷ୍ଟ କଲାପରି ଗୋଟିକ ପରେ ଗୋଟିଏ କାର୍ଯ୍ୟକ୍ରମ ଟ୍ରେଡ଼ ୟୁନିୟନମାନଙ୍କୁ ନେବାକୁ ହେବ। ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟକଳାପ, ବାର୍ସଗୃହ, ଶିକ୍ଷା ଓ ସ୍ୱାସ୍ଥ୍ୟ ସଂପର୍କୀୟ କାର୍ଯ୍ୟକ୍ରମମାନ ଯଥାର୍ଥ ମଞ୍ଚରୁ ପରିଚାଳିତ କରିବାପାଇଁ ଲାଗିପଡ଼ିବାକୁ ପଡ଼ିବ। ଏହି କ୍ଷେତ୍ର ଗୁଡିକ ପୁଂଜିବାଦୀ ଓ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କ କାର୍ଯ୍ୟକଳାପ ପାଇଁ ଛାଡ଼ି ଦେଲେ ଶ୍ରମିକମାନଙ୍କ ରାଜନୈତିକ ଚେତନାର ବିକାଶ ଘଟାଇବା ବାଧାପ୍ରାପ୍ତ ହେବ।

## ୪. ମତାଦର୍ଶଗତ ସଂଗ୍ରାମ

ସାମ୍ରାଜ୍ୟବାଦୀଙ୍କ ଜଗତିକରଣ ଅଭିଯାନରେ ମତାଦର୍ଶନଗତ ଆକ୍ରମଣ ଅନ୍ତର୍ଭୁକ୍ତ। ଶ୍ରେଣୀ ସଂଗ୍ରାମକୁ ବଦନାମ କରି ଶ୍ରମିକ ଶ୍ରେଣୀର ଭୂମିକା ନ୍ୟୁନ୍ କରିବା ଲାଗି ଏହା କରାଯାଇଥାଏ। ଶ୍ରମିକ ଶ୍ରେଣୀ ଆନ୍ଦୋଳନକୁ ତାର ଶ୍ରେଣୀ ଓ ରାଜନୈତିକ ଅବଧାରଣାଠାରୁ ଅଲଗା କରିନେବା ପାଇଁ ଓ ତାକୁ ମତାଦର୍ଶହୀନ କରିଦେବା ପାଇଁ ଶାସକ ଶ୍ରେଣୀମାନଙ୍କର ବଢ଼ିଚାଲିଥିବା ଆକ୍ରମଣର ପଟ୍ଟଭୂମିରେ ଶ୍ରମିକ ଶ୍ରେଣୀ ଭିତରେ ଆମ ମତାଦର୍ଶଗତ କାମ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ। ଭାରତୀୟ ପରିସ୍ଥିତିରେ ଶ୍ରମିକ ଶ୍ରେଣୀ ଆନ୍ଦୋଳନ ଭିତରେ ନିରବରେ ବ୍ୟାପିଯାଇଥିବା ଶତ୍ରୁ ଶ୍ରେଣୀ ମତାଦର୍ଶର ମୁକାବିଲା ଲାଗି ଧାରାବାହିକ ମତାଦର୍ଶଗତ ଅଭିଯାନ ପ୍ରୟୋଜନ। ସ୍ୱାଧୀନ ଶ୍ରମିକ ଶ୍ରେଣୀ ଆନ୍ଦୋଳନର ଭୂମିକାକୁ ନ୍ୟୁନ କରି ଶ୍ରେଣୀ-ସହଯୋଗୀ ଅବଧାରଣା ଏବଂ ହିନ୍ଦୁତ୍ୱ, ଜାତିଆଣବାଦ, ଆଞ୍ଚଳିକ ଅହମିକା ଆଦି ପରି ଅନେକ ସାମନ୍ତବାଦୀ ଓ ବିଭାଜନକାରୀ ମତାଦର୍ଶ ଶ୍ରମିକଶ୍ରେଣୀ ଭିତରେ ବ୍ୟାପୀ ଯାଇଛି। ଏହା ଶ୍ରମିକ ଶ୍ରେଣୀକୁ ଭାଗ ଭାଗ କରିବା ସହିତ ଶ୍ରମିକ ଶ୍ରେଣୀର ଏକତା ପାଇଁ ପ୍ରତିବନ୍ଧକ ହୋଇଥାଏ।

## ୫. ସମଗ୍ର ଶ୍ରେଣୀକୁ ଐକ୍ୟବଦ୍ଧ କରିବା ଓ ଟ୍ରେଡ଼ ୟୁନିୟନ ଏକତା ପ୍ରତିଷ୍ଠା କରିବାର କାମ

୧୯୮୩ର ଦଲିଲ ସଠିକ୍‌ଭାବେ ଉଲ୍ଲେଖ କରିଥିଲା ଯେ, ''କ୍ରମବର୍ଦ୍ଧମାନ ଟ୍ରେଡ଼ ୟୁନିୟନ ଏକତା ମାଧ୍ୟମରେ ସମଗ୍ର ଶ୍ରମିକ ଶ୍ରେଣୀକୁ ଐକ୍ୟବଦ୍ଧ କରିବା ହେଲା ଆମ ଟ୍ରେଡ଼ ୟୁନିୟନ କାର୍ଯ୍ୟକଳାପର କେନ୍ଦ୍ର ବିନ୍ଦୁ। ଏ ଶ୍ରେଣୀ ଯଦି ତାର ଅର୍ଥନୈତିକ ଦାବି ଦୁବା ପାଇଁ ଅଧିକରୁ ଅଧିକ ଐକ୍ୟବଦ୍ଧ ନହୁଏ ତାହା ହେଲେ ଜନସାଧାରଣଙ୍କୁ ନେତୃତ୍ୱ ଦେଇ ଶ୍ରମିକ ଶ୍ରେଣୀ ତାର ଐତିହାସିକ ଭୂମିକା ପାଳନ କରିବ ବୋଲି କହିବା ମୂଲ୍ୟହୀନ''। ବିଗତ ଏକ ଦଶନ୍ଧି ଧରି ଚାଲିଥିବା ଉଦାରୀକରଣ-ଘରୋଇକରଣର ଆକ୍ରମଣ ଦୃଷ୍ଟିରୁ ଟ୍ରେଡ଼ ୟୁନିୟନ ଏକତା ଓ ଶ୍ରମିକ ଶ୍ରେଣୀର ଏକତା ଗଢ଼ିତୋଳିବାର କାମ ଆହୁରି ଗୁରୁତ୍ୱପୂର୍ଣ୍ଣ ହୋଇପଡ଼ିଛି। ବିଗତ ଦୁଇ ଦଶକରେ ଏହି କାମ ସବୁ କିପରି ହୋଇଛି ତାର ସମ୍ୟକ୍ ପର୍ଯ୍ୟାଲୋଚନା ପ୍ରୟୋଜନ।

ବିଭିନ୍ନ ପ୍ରକାର ଆକ୍ରମଣ ସାମନାରେ ଶ୍ରମିକ ଶ୍ରେଣୀର ଅଧିକାର ରକ୍ଷା କରିବା ଓ ଟ୍ରେଡ଼ ୟୁନିୟନ ଏକତା ପାଇଁ ସି.ଆଇ.ଟି.ୟୁ. ଯୋର ଦେବା ଫଳରେ କେତେକ ଗୁରୁତ୍ୱପୂର୍ଣ୍ଣ ମିଳିତ ଆନ୍ଦୋଳନ ତଥା ଟ୍ରେଡ଼ ୟୁନିୟନମାନଙ୍କର ମିଳିତ ମଞ୍ଚ ଗଢ଼ି ଉଠିଲା। ୧୯୮୦ରେ ଟ୍ରେଡ଼ ୟୁନିୟନମାନଙ୍କ ଜାତୀୟ ଅଭିଯାନ କମିଟି ଗଢ଼ି ଉଠିଲା। ତାପରେ ୮୦ ଦଶକରେ ମଧ୍ୟମ ଭାଗରେ ଗଠିତ ହେଲା ରାଷ୍ଟ୍ରାୟତ ସଂସ୍ଥାର ଟ୍ରେଡ ୟୁନିୟନମାନଙ୍କ ଜାତୀୟ କମିଟି (ସି.ପି.ଏସ୍.ୟୁ.)। ୧୯୯୦ ଦଶକରେ ଉଦାରୀକରଣ ନୀତି ପ୍ରଚଳିତ ହେବା ବେଳେ ସି.ଆଇ.ଟି.ୟୁ. ଉଦ୍ୟମରେ ଗଢ଼ି ଉଠିଲା ଟ୍ରେଡ଼ ୟୁନିୟନମାନଙ୍କ ସ୍ପନ୍ସରିଂ ବା ଉଦ୍ୟୋକ୍ତା କମିଟି। ଏଥିରେ ଆଇ.ଏନ୍.ଟି.ୟ.ସି. ଓ ବି.ଏମ୍.ଏସ୍. ଛଡ଼ା ଅନ୍ୟ ସମସ୍ତ କେନ୍ଦ୍ରୀୟ ଟ୍ରେଡ଼ ୟୁନିୟନ ରହିଲେ। ୧୯୯୧ରେ ହୋଇଥିବା ପ୍ରଥମ ସାରାଭାରତ ଧର୍ମଘଟ ଏଥିପାଇଁ ପଥପ୍ରସସ୍ତ କରିଥିଲା। ୧୯୯୩ରେ ଗଣସଂଗଠନମାନଙ୍କ ଜାତୀୟ କମିଟି ଗଠନରେ ଏହି ସ୍ପନ୍ସରିଂ କମିଟି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା। ୧୯୯୧ରୁ ୨୦୦୧ ମଧ୍ୟରେ ଛଅ ଗୋଟି ଦେଶବ୍ୟାପୀ ଧର୍ମଘଟ ହୋଇଥିଲା। ଏହି ଧର୍ମଘଟ ଗୁଡିକରେ ଅଧିକରୁ ଅଧିକ ଶ୍ରମିକ ୟୁନିୟନ ଏବଂ ନୂଆ ନୂଆ ଅଂଶର ଶ୍ରମିକ କର୍ମଚାରୀମାନେ ଭାଗ ନେଇଥିବାର ଦେଖାଯାଇଥିଲା।

ରାଷ୍ଟ୍ରାୟତ ସଂସ୍ଥା ଉପରେ ଆକ୍ରମଣ ବିରୁଦ୍ଧରେ ସଂଗ୍ରାମରେ ସି.ପି.ଏସ୍.ଟି.ୟୁ. ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା। ୨୦୦୨ ଏପ୍ରିଲ୍ ୧୬ର ରାଷ୍ଟ୍ରାୟତ ଶିଳ୍ପ ଧର୍ମଘଟକୁ ଏହି ମିଳିତ ମଞ୍ଚ ହିଁ ପରିଚାଳନା କରିଥିଲା। ଡାକ, ଟେଲିକମ୍, ବ୍ୟାଙ୍କ, ବୀମା କୋଇଲା ଶ୍ରମିକ ଓ ରାଜ୍ୟ ସରକାରୀ କର୍ମଚାରୀ ଆଦି ବିଭିନ୍ନ ଅଂଶର ଶ୍ରମିକ କର୍ମଚାରୀମାନଙ୍କର ଅନେକ ଗୁଡିଏ ମିଳିତ ସଂଗ୍ରାମ ବିଗତ ଦଶକରେ ପରିଚାଳିତ ହୋଇଛି।

ଉଦାରୀକରଣର ଆଦ୍ୟସ୍ତରରେ ଟ୍ରେଡ଼ ୟୁନିୟନ ଆନ୍ଦୋଳନରୁ କେତେକଙ୍କ ଭିତରେ ସେ ସଂପର୍କରେ କିଛି ମୋହ ଥିଲା। ମାତ୍ର ବ୍ୟାପକ କ୍ଲୋଜର, ଛଟେଇ ଓ ଘରୋଇକରଣ ମଧ୍ୟ ଦେଇ ଏଇ ନୀତି ଗୁଡିକରେ ସାଂଘାତିକ ପରିଣତି ପ୍ରକାଶ ପାଇବା ପରେ ଉଦାରୀକରଣ ବିରୋଧରେ ବ୍ୟାପକ ମଞ୍ଚ ପାଇଁ କ୍ଷେତ୍ର ସୃଷ୍ଟି ହେଲା।

ବ୍ୟାପକତମ ଟ୍ରେଡ ୟୁନିୟନ ଏକତା ପାଇଁ ସଂଗ୍ରାମ ଏହି ସ୍ତରରେ ଦେଖା ଦେଲା। କଂଗ୍ରେସ ଓ ବି.ଜେ.ପି. ଦୁଇଟି ବଡ଼ ବଡ଼ ପୁଂଜିବାଦୀ ଦଳଙ୍କ ଦ୍ୱାରା ପରିଚାଳିତ ସଂଗଠନ ଦ୍ୱୟ ହେଲା, ଆଇ.ଏନ୍.ଟି.ୟୁ.ସି. ଓ ବି.ଏମ୍.ଏସ୍.। ଏକ ଦିଗରେ ଆଇ.ଏନ୍.ଟି.ୟୁ.ସି. ଓ ବି.ଏମ୍.ଏସ୍.ର ନେତୃତ୍ୱ ଶ୍ରମିକ ବିରୋଧି ନୀତିଗୁଡିକ ବିରୁଦ୍ଧରେ ଅଭିଯାନ ପାଇଁ ମିଳିତ ମଞ୍ଚକୁ ଆସିବାକୁ ବାଧ୍ୟ ହୋଇଛନ୍ତି। ଏପରିକି ରାଜ୍ୟସ୍ତରରେ ସେମାନେ ସାଧାରଣ ଧର୍ମଘଟ ଓ ବଂଦ ଆନ୍ଦୋଳନରେ ଯୋଗ ଦେଇଛନ୍ତି। ଅନ୍ୟଦିଗରେ ସରକାରର ସେହି ନୀତିଗୁଡ଼ିକ ବିରୁଦ୍ଧରେ ଆଇ.ଏନ୍.ଟି.ୟୁ.ସି. ଓ ବି.ଏମ୍.ଏସ୍. ଉଭୟେ ଜାତୀୟସ୍ତରର ସାଧାରଣ ଧର୍ମଘଟରେ ଯୋଗଦେବାକୁ ଅସ୍ୱୀକାର କରୁଛନ୍ତି। ଆଇ.ଏନ୍.ଟି.ୟୁ.ସି. ଏପ୍ରକାର ଧର୍ମଘଟ ଡ଼ାକରାକୁ ବିରୋଧ କରିଥାଏ ଏବଂ ବି.ଏମ୍.ଏସ୍. ଧର୍ମଘଟ ତାରିଖକୁ ବାରମ୍ବାର ଗଡ଼ାଇବାରେ ଲାଗିଥାଏ। ପରିସ୍ଥିତିରେ ଆଉ ଏକ ଦିଗ ହେଲା, ଆଇ.ଏନ୍.ଟି.ୟୁ.ସି. ଓ ବି.ଏମ୍.ଏସ୍‌ରେ ସାମିଲ ୟୁନିୟନମାନେ ବିଭିନ୍ନ ସ୍ଥାନୀୟ କ୍ଷେତ୍ରରେ ଧର୍ମଘଟରେ ଯୋଗ ଦେଇଥାନ୍ତି। ୨୦୦୧ରେ ସାଧାରଣ ଧର୍ମଘଟ ଭିତରକୁ ଯିବାପାଇଁ ସି.ଆଇ.ଟି.ୟୁ.ର ଉଦ୍ୟମକୁ ପାର୍ଟି ଅନୁମୋଦନ କରିଥିଲେ ମଧ୍ୟ ଏବଂ ଏଥିରେ ଟ୍ରେଡ଼ ୟୁନିୟନମାନଙ୍କ ସହିତ ଅନ୍ୟାନ୍ୟ ଗଣସଂଗଠନମାନେ ଯୋଗ ଦେବାର ଥିଲେ ମଧ୍ୟ ଆଇ.ଏନ୍.ଟି.ୟୁ.ସି. ଓ ବି.ଏମ୍.ଏସ୍.ଙ୍କ ପ୍ରତିବନ୍ଧକ ଯୋଗୁ ଟ୍ରେଡ଼ ୟୁନିୟନମାନଙ୍କ ମିଳିତ ମଂଚରୁ ଏଥିପାଇଁ ଡ଼ାକରା ଦିଆଯାଇ ପାରିନଥିଲା। ଆର୍.ଏସ୍.ଏସ୍. ଦ୍ୱାରା ପରିଚାଳିତ ବି.ଏମ୍.ଏସ୍. ବାଜପେୟୀ ସରକାର ବିରୁଦ୍ଧରେ କୌଣସି ସର୍ବଭାରତୀୟ ଆନ୍ଦୋଳନରେ ପ୍ରବେଶ କରିବ ନାହିଁ। ଏପରି ଅବସ୍ଥାରେ ସର୍ବଭାରତୀୟ କ୍ଷେତ୍ରରେ ବ୍ୟାପକ ଟ୍ରେଡ଼ ୟୁନିୟନ ଏକତା ପାଇଁ ସଂଗ୍ରାମକୁ କିପରି ଆଗେଇ ନିଆଯିବ ତାହା ବିଚାର କରିବାକୁ ହେବ। ଅତୀତରେ ସି.ଆଇ.ଟି.ୟୁ.ର ଅଭିଜ୍ଞତା ଦର୍ଶାଏ ଯେ, ଦୃଢ଼ ଆସ୍ଥାନ ଗ୍ରହଣ କରି ଧର୍ମଘଟ ଦିଗରେ ଲଗାତର ଅଭିଯାନ ସହ ଆମେ ଚାପ ସୃଷ୍ଟି କରିପାରିଥିଲୁ। ୧୯୯୧ରେ ଉଦାରୀକରଣ ନୀତି ନୂଆ ଭାବେ ପ୍ରଚଳିତ ହେଉଥିବା ବେଳେ ଦେଶବ୍ୟାପୀ ଧର୍ମଘଟ ପାଇଁ ଅନ୍ୟାନ୍ୟ ଟ୍ରେଡ଼ ୟୁନିୟନମାନେ ଆମ ସହ ଆସୁନଥିଲା ବେଳେ ମଧ୍ୟ ଆମେ ଧର୍ମଘଟ ଭିତରେ ପଶିପାରିଥିଲୁ। ଏହି ଧର୍ମଘଟ ଯୋଗୁ ଟ୍ରେଡ଼ ୟୁନିୟନମାନଙ୍କ ଉଦୋକ୍ତା କମିଟି ଗଠିତ ହୋଇପାରିଥିଲା। ସେହିପରି ୨୦୦୧ରେ କୋଇଲା ଶିଳ୍ପରେ ସି.ଆଇ.ଟି.ୟୁ. ଦ୍ୱାରା ସ୍ୱାଧୀନଭାବେ ପରିଚାଳିତ ଧର୍ମଘଟ ପରବର୍ତ୍ତୀ ସମୟରେ କୋଇଲା ଶିଳ୍ପର ଘରୋଇକରଣ ଓ ଅନ୍ୟାନ୍ୟ ପ୍ରଶ୍ନ ଉପରେ ମିଳିତ କାର୍ଯ୍ୟକ୍ରମ ପାଇଁ କ୍ଷେତ୍ର ସୃଷ୍ଟି କରିଥିଲା।

ଏହି ପରିପ୍ରେକ୍ଷୀରେ ଆମକୁ ମନେରଖିବାକୁ ହେବ ଯେ ଶାସକ ଶ୍ରେଣୀର ନୀତିଗୁଡ଼ିକ ବିରୁଦ୍ଧରେ ରାଜନୈତିକ ସଂଗ୍ରାମକୁ ଆଗେଇ ନେବା ପାଇଁ ଆମେ ଟ୍ରେଡ଼ ୟୁନିୟନମାନଙ୍କୁ ଏକତାବଦ୍ଧ କରିଥାଉ। ଅନ୍ଦୋଳନ କ୍ଷେତ୍ରରେ ଆମ ନୀତି ଉପରେ ସାଲିସ୍ କଲେ ଲକ୍ଷ ସାଧନ ହୋଇ ପାରିବ ନାହିଁ। ବରଂ ଅତୀତର ଅଭିଜ୍ଞତା ପ୍ରମାଣକରେ, ଦେଶବ୍ୟାପୀ ସଂଗ୍ରାମ ପାଇଁ ଲଗାତର ଭାବେ ପ୍ରବଳ ଚାପ ସୃଷ୍ଟ କରିପାରିଲେ ସଂସ୍କାରବାଦୀ ଟ୍ରେଡ଼ ୟୁନିୟନ ନେତାମାନେ ମିଳିତ ମଂଚରେ ଯୋଗଦେବାକୁ ବାଧ୍ୟ ହୋଇଥାନ୍ତି। ସବୁ ଅଂଶର ଶ୍ରମିକମାନଙ୍କ ଏକତା ଗଢ଼ିତୋଳିବା ପାଇଁ ସି.ଆଇ.ଟି.ୟୁ. ସମସ୍ତ ଟ୍ରେଡ ୟୁନିୟନମାନଙ୍କୁ ନେଇ ଏକ କନ୍‌ଫେଡ଼େରେସନ୍ ବା ମହାସଂଘ ଗଠନର ଡାକରା ଦେଇଥିଲା। ଏ.ଆଇ.ଟି.ୟୁ.ସି. ସମେତ ଅନ୍ୟାନ୍ୟ ଟ୍ରେଡ଼ ୟୁନିୟନ୍‌ମାନେ ଏ ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ। ଏହି ସମର୍ଥନ ଅଭାବ ଯୋଗୁ ଏ ସ୍ଲୋଗାନ୍‌କୁ ଆଗେଇ ନେବା ସମ୍ଭବ ହେଲା ନାହିଁ। ଏକତାର ସ୍ଲୋଗାନ୍‌କୁ ଲୋକପ୍ରିୟ କରିବାପାଇଁ ଶ୍ରମିକମାନଙ୍କ

ଭିତରେ ଆହୁରି ଜୋରଦାର ଅଭିଯାନ ପରିଚାଳନା କରିବାର ଆବଶ୍ୟକତାକୁ ଏହା ଦର୍ଶାଏ। ତାଫଳରେ କେବଳ କନ୍‌ଫେଡ଼େରେସନ୍ ବା ମହାସଂଘ ଗଠନ ବିଷୟ ଏକ ବାସ୍ତବବାଦୀ ପ୍ରସ୍ତାବରେ ପରିଣତ ହୋଇପାରିବ।

ଦେଶବ୍ୟାପୀ ଅଭିଯାନ ଓ ପ୍ରତିବାଦ କାର୍ଯ୍ୟକ୍ରମ ଆଗେଇ ନେବାରେ ଏନ୍.ପି.ଏମ୍. ଓ ଏକ ଆବଶ୍ୟକୀୟ ଭୂମିକା ଗ୍ରହଣ କରିଛି। ଶ୍ରମଜୀବୀ ମଣିଷର ସକଳ ଅଂଶର ଦାବିକୁ ତୋଳିଧରି ମିଳିତ ଆନ୍ଦୋଳନ ପାଇଁ ଏହାକୁ ସକ୍ରୀୟ କରିବାକୁ ହେବ। ଯଦିଓ ଟ୍ରେଡ଼ ୟୁନିୟନମାନେ ପ୍ରଧାନ ଭୂମିକା ଗ୍ରହଣ କରିବେ ଅନ୍ୟଗଣସଂଗଠନମାନେ ଏଥିରେ ସାମିଲ ହୋଇ ଏକତାର ପରିସରକୁ ଯେପରି ବୃଦ୍ଧି କରନ୍ତି ସେଥିପାଇଁ ପାର୍ଟିକୁ ଅଧିକ ତତ୍ପର ହେବାକୁ ପଡ଼ିବ।

## ୬. ଆମ ଦୁର୍ବଳତା ସମୂହ

ମିଳିତ ଆନ୍ଦୋଳନ ପାଇଁ ଦିନୁ ଦିନ ବଢୁଥିବା ଆବେଗ ଓ ଆକାଂକ୍ଷା ସତ୍ତ୍ୱେ ଆମର ମନୋଭାବ ଓ ସଂଗଠନର କ୍ଷେତ୍ରରେ ଥିବା ଦୁର୍ବଳତା ଯୋଗୁ ଆମେ ସେ ସବୁର ସଦ୍‌ବ୍ୟବହାର କରିବାରେ ଏବେ ବି ବିଫଳ ହେଉଛୁ। ଅନ୍ୟାନ୍ୟ ଟ୍ରେଡ଼ ୟୁନିୟନଙ୍କ ସହ ଏକତା ପାଇଁ ଉଦ୍ୟମ କରିବା ଭିତରେ ସେ କ୍ଷେତ୍ରରେ ସଂଗ୍ରାମ ସଂପର୍କରେ ଏକ ସାଲିସ୍‌କାରୀ ପ୍ରବଣତା ଆମ ସଂଗଠନ ଭିତରେ ଦେଖା ଦେଇଥାଏ। ଦେଶବ୍ୟାପୀ ମିଳିତ ଆନ୍ଦୋଳନର ସଂଭାବନା ଉଜ୍ଜ୍ୱଳ ହୋଇ ଉଠୁଥିବା ବେଳେ ଏପ୍ରକାର ମନୋଭାବ ସଂପର୍କରେ ଆମକୁ ସତର୍କ ରହିବାକୁ ହେବ ଏବଂ ଆମର ଲକ୍ଷ ସଂପର୍କରେ ଅତ୍ୟନ୍ତ ପରିଷ୍କାର ରହିବାକୁ ପଡ଼ିବ।

ଆମ କର୍ତ୍ତବ୍ୟ ଗୁଡ଼ିକ ଦର୍ଶାଇବା ସଂପର୍କରେ ୧୯୮୩ର ଦଲିଲ ଏବେ ବି ପ୍ରାସଙ୍ଗିକ। ଏହା ଉଲ୍ଲେଖ କରିଛି, ''ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଭିତରେ ଥିବା ଶତ୍ରୁ ଶ୍ରେଣୀର ପ୍ରଭାବ ବିରୁଦ୍ଧରେ ସଂଗ୍ରାମ ପାଇଁ ଟ୍ରେଡ଼ ୟୁନିୟନ ଏକତା ଲାଗି ଲଢ଼େଇ ଏକ ହତିଆର। ଆମେ ଗୋଟିଏ ସାମଞ୍ଜସ୍ୟପୂର୍ଣ୍ଣ ପଥ ପାଇଁ ଲଢୁଥିବା ବିଷୟ ଶ୍ରମିକମାନେ ଦେଖିବା ଉଚିତ। ଆମ କାର୍ଯ୍ୟଧାରା ଦେଖି ସେମାନେ ଅନ୍ୟମାନଙ୍କୁ ମୂଲ୍ୟାୟନ କରିବେ। ଯଦି ଏହା ନହେଲା, ଘଡ଼ିସନ୍ଧି ବେଳେ ଆମ ଭାଗୁଆଳୀମାନଙ୍କ ଦୋଦୁଲ୍ୟମାନତାକୁ ଅତିକ୍ରମ କରିବା କଷ୍ଟକର ହେବ।''

ଆହୁରି ମଧ୍ୟ ମିଳିତ ଆନ୍ଦୋଳନ ପ୍ରତି ବୃଦ୍ଧି ପାଉଥିବା ସମର୍ଥନ ସତ୍ତ୍ୱେ, ବଢ଼ି ଚାଲିଥିବା ଆକ୍ରମଣର ମୁକାବିଲା କଲା ପରି ସ୍ତରକୁ ଏହାକୁ ଏପର୍ଯ୍ୟନ୍ତ ନିଆଯାଇ ପାରି ନାହିଁ। ଏବେ ମଧ୍ୟ ଏକ ବଡ ଅଂଶର ଶ୍ରମିକମାନଙ୍କୁ ମିଳିତ ଆନ୍ଦୋଳନ ଭିତରକୁ ଅଣାଯାଇ ପାରିଲା ନାହିଁ। ଏହି ଆନ୍ଦୋଳନରେ ଯୋଗ ଦେବାକୁ ସେମାନଙ୍କ କୁଣ୍ଠା ଯୋଗୁ ନୁହେଁ, ସେମାନଙ୍କ ପାଖରେ ପହଞ୍ଚିବାରେ ଆମ ଅକ୍ଷମତା ଯୋଗୁ ଏହା ଘଟିଛି। ଆମର ସମସ୍ତ ଆନ୍ଦୋଳନ ଓ ପ୍ରଚାର କାର୍ଯ୍ୟ ବେଳେ ପାରମ୍ପରିକ ସୀମା ସରହଦ ଭିତରେ ରହିବାର ଏକ ପ୍ରବଣତା ଥାଏ। ଗଣସମସ୍ୟା ଓ ରାଜନୈତିକ ପ୍ରଶ୍ନ ଉଭୟ କ୍ଷେତ୍ରରେ ଏହା ଦେଖାଯାଇଥାଏ। ଶ୍ରମଜୀବୀ ମଣିଷଙ୍କ ବ୍ୟାପକତମ ସ୍ତରକୁ ଆମ ବାର୍ତ୍ତା ନେଇଯିବା ଲାଗି ସଚେତନ ଉଦ୍ୟମ ନଥାଏ। ଫଳରେ ଏଗୁଡ଼ିକ ମାମୁଲି ଆନୁଷ୍ଠାନିକ ରୂପ ନେଇଥାଏ।

ଆମ ଉଦ୍ୟମଶୀଳତା ଓ ଦେଶରେ ମିଳିତ ଆନ୍ଦୋଳନର ବିକାଶ ଘଟାଇବାରେ ଆମ ଅଗ୍ରଗତି ସତ୍ତ୍ୱେ, ଏହି ସବୁ ସାଂଗଠନିକ ଦୁର୍ବଳତା ଯୋଗୁ ଅଳ୍ପ କେତେକ ପ୍ରଭାବଥିବା କ୍ଷେତ୍ରକୁ ଛାଡ଼ି ଦେଲେ ଆଉ କୌଣସି ସ୍ଥାନରେ ଆମର ସାଂଗଠନିକ ଅଗ୍ରଗତି ଘଟିନାହିଁ। ଏହି ଦୁର୍ବଳତା ମିଳିତ ଆନ୍ଦୋଳନର ସାଂଗଠନିକ ସଂହତିରେ ପୁଣି ପ୍ରତିବନ୍ଧକ ହୋଇଥାଏ। ଶ୍ରେଣୀ ସଂଗ୍ରାମକୁ

ଉର୍ଦ୍ଧ୍ୱରେ ତୋଳି ଧରିଥିବା ଶ୍ରମିକ ଶ୍ରେଣୀର ବୈପ୍ଳବିକ ସ୍ରୋତକୁ ଶକ୍ତିଶାଳୀ ନକଲେ ଠିକ୍ ଦିଗରେ ମିଳିତ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ନିରବଚ୍ଛିନ୍ନ ଭାବେ ଆଗେଇ ନିଆଯାଇ ପାରେନା। ଏହି ମୌଳିକ ବିଷୟଟି ହୃଦୟଙ୍ଗମ କରିବାରେ ଥିବା ଦୁର୍ବଳତାକୁ ଏସବୁ ଦର୍ଶାଏ। ଏସବୁ ଦୁର୍ବଳତା ଯୋଗୁ ବର୍ତ୍ତମାନର ଏନ୍.ଡି.ଏ. ଶାସନ ସଂପର୍କରେ ଲୋକଙ୍କ ମୋହମୁକ୍ତି ଘଟୁଥିବା ବେଳେ ତାକୁ ସଂପୂର୍ଣ୍ଣ ଭାବେ କାମରେ ଲଗାଯାଇ ପାରୁନାହିଁ। ଏହି ଦୁର୍ବଳତା ଗୁଡିକୁ ଦୂର କରିବା ଲାଗି ଯଦି ଆମେ ଦ୍ରୁତ ପଦକ୍ଷେପ ନନେଉ ତାହାହେଲେ ଆମ ଅନୁଗାମୀମାନଙ୍କ ଭିତରେ ହତୋତ୍ସାହ ସୃଷ୍ଟି ହେବାର ବିପଦ ଅଛି।

ସୁତରାଂ ଗତାନୁଗତିକ ସୀମା ସରହଦ ଅତିକ୍ରମ କରି ଶ୍ରମଜୀବୀ ମଣିଷଙ୍କ ବ୍ୟାପକତମ ଅଂଶ ପାଖରେ ପହଞ୍ଚିବାର ମନୋଭାବ ନେଇ ପାର୍ଟି ଓ ଟ୍ରେଡ୍ ୟୁନିୟନମାନେ ନିଜସ୍ୱ ଅଭିଯାନ ପରିଚାଳନା କରିବା ଓ ଜନସାଧାରଣଙ୍କୁ ସ୍ୱାଧୀନଭାବେ ସଂଗଠିତ କରିବା ପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ। ଅନ୍ୟମାନଙ୍କ ଦୋଦୁଲ୍ୟମାନତା ଅତିକ୍ରମ କରି ମିଳିତ ଟ୍ରେଡ୍ ୟୁନିୟନ (ଟି.ୟୁ.) ଆନ୍ଦୋଳନକୁ ଲଗାଇ ରଖିବା ଏବଂ ବୃଦ୍ଧି ପାଉଥିବା ଆକ୍ରମଣ ସାମନାରେ ଏପ୍ରବାହକୁ ଆଗେଇ ନେବା ପାଇଁ ଏହା ଆହୁରି ଅଧିକ ପ୍ରୟୋଜନ। ଏ କ୍ଷେତ୍ରରେ ଆମର ଗୋଟିଏ ବଡ଼ ଦୁର୍ବଳତା ହେଲା, ଜାତୀୟ ତଥା ଶିଳ୍ପଗତ ଭାବେ ବହୁ ସାଫଲ୍ୟମଣ୍ଡିତ ମିଳିତ ଆନ୍ଦୋଳନ ସତ୍ତ୍ୱେ ତାର ଧାରାବାହିକତା ଫଳପ୍ରଦ ଭାବେ ରକ୍ଷା କରାଯାଇପାରି ନାହିଁ।

## ୭. ଅସମ ବିକାଶ ଓ ସାଂଗଠନିକ ଦୁର୍ବଳତା :

୧୯୯୯ରେ ସି.ଆଇ.ଟି.ୟୁ.ର ସଭ୍ୟ ସଂଖ୍ୟା ଥିଲା: ୩୨ ଲକ୍ଷ ୬୮ ହଜାର ୫୨୮। ୧୯୯୧ରୁ ୧୯୯୯ ମଧ୍ୟ ସଭ୍ୟ ସଂଖ୍ୟା ୩୮.୬ ଶତାଂଶ ବୃଦ୍ଧି ପାଇଛି। ମାତ୍ର ଏ ସଭ୍ୟ ସଂଖ୍ୟା ପ୍ରଧାନତଃ ୪ ଗୋଟି ରାଜ୍ୟର ପଶ୍ଚିମବଂଗ, କେରଳ, ତାମିଲନାଡୁ ଓ ଆନ୍ଧ୍ର ପ୍ରଦେଶ ଏମାନଙ୍କ ସର୍ବମୋଟ ସଭ୍ୟ ସଂଖ୍ୟା ହେଲା: ୨୬.୬ ଲକ୍ଷ। ୧୯୯୨ରୁ ୧୯୯୯ ମଧ୍ୟରେ ବୃଦ୍ଧି ପାଇଥିବା ୯ ଲକ୍ଷ ସଭ୍ୟ ସଂଖ୍ୟାରୁ ୬ ଲକ୍ଷ ୭୫ ହଜାର କେବଳ ଏଇ ୪ ଗୋଟି ରାଜ୍ୟରୁ। ଶିଳ୍ପାକରଣରେ ସବା ଉପରେ ଥିବା ଦୁଇ ରାଜ୍ୟ, ମହାରାଷ୍ଟ୍ର ଓ ଗୁଜୁରାଟ ମଧ୍ୟରୁ ମହାରାଷ୍ଟ୍ରରେ ସି.ଆଇ.ଟି.ୟୁ. ଅତ୍ୟନ୍ତ ଦୁର୍ବଳ ଏବଂ ଗୁଜୁରାଟରେ ନାମକୁ ମାତ୍ର ଏକ ପ୍ରତୀକ ପରି। ହିନ୍ଦି ଭାଷାଭାଷୀ ରାଜ୍ୟଗୁଡିକ ମଧ୍ୟରୁ କେତେକ ସ୍ଥାନରେ କିଛି ଆନ୍ଦୋଳନ ହେବା ସହ ସାମାନ୍ୟ ସଭ୍ୟ ସଂଖ୍ୟା ବଢ଼ିଲେ ମଧ ପୂର୍ବରେ ଦୁର୍ବଳତା ବଳବତ୍ତର ରହିଛି। ଭୁବନେଶ୍ୱରରେ ଗୃହୀତ ସି.ଆଇ.ଟି.ୟୁ.ର ସାଂଗଠନିକ ଦଲିରେ ଯେଉଁ ଦୁର୍ବଳତା ଗୁଡର୍କ ଦର୍ଶଯାଇଥିଲା ତାହା ଏବେ ବି ବିଦ୍ୟମାନ। ରାଜ୍ୟମାନଙ୍କରେ କେନ୍ଦ୍ରୀୟଭାବେ କାମର ଅଭାବ; ନେତୃତ୍ୱ ଭିତରେ ସମଧାରଣା ଓ ସାମୁହିକ କାର୍ଯ୍ୟଧାରାର ଅଭାବ, ଯୋଜନାବଦ୍ଧ ଉଦ୍ୟମଶୀଳତା ଓ ଅଗ୍ରାଧିକାର ଭିତ୍ତିରେ କାମର ଅଭାବ ଆଦି ଯେଉଁ ଦୁର୍ବଳତା ଗୁଡିକ ଦର୍ଶାଯାଇଥିଲା ସେ ସବୁ ପାର୍ଟି ଓ ଗଣ-ଫ୍ରଣ୍ଟ ଉଭୟ ସ୍ତରରେ ରହିଥିବା ଦୃଷ୍ଟିରୁ ସେ ପ୍ରସ୍ତାବ ଏବେ ବି ପ୍ରାସଙ୍ଗିକ। ଦୁର୍ବଳ ରାଜ୍ୟ ଗୁଡିକରେ ଘାଟି ଶିଳ୍ପ, ବଡ଼ ବଡ଼ ଶିଳ୍ପ ସଂସ୍ଥା ଓ ଏପରିକି ବିସ୍ତୃତ ଅସଂଗଠିତ କ୍ଷେତ୍ରରେ ମଧ ଆମେ ୟୁନିୟନ ଗଢ଼ି ବିକାଶ ଘଟାଇ ପାରିନାହୁଁ।

ଶିଳ୍ପ ଓ ପରିସେବା କ୍ଷେତ୍ରରେ ବିଭିନ୍ନ ଭାଗରେ ଅତ୍ୟନ୍ତ ଅସମ ବିକାଶ ବିଦ୍ୟମାନ। ବହୁ ରାଜ୍ୟରେ ଆଧୁନିକ ଓ ସଂଗଠିତ ଶିଳ୍ପ ଗୁଡିକରେ ଆମ ଉପସ୍ଥିତି ନଗଣ୍ୟ। ଘାଟି ଶିଳ୍ପ ଗୁଡିକ ଆମ କାର୍ଯ୍ୟ ଯୋଜନାରୁ ବାଦ୍ ଦେବାର ପ୍ରବଣତା ବହୁ ରାଜ୍ୟରେ ଦେଖାଯାଏ। ନୂଆ ଅର୍ଥନୈତିକ

ଯୋନ୍ ଓ ବିଦେଶୀ ବହୁଜାତିକ ସଂସ୍ଥାଙ୍କ ଶିଳ୍ପଗୁଡ଼ିକରେ ପ୍ରବେଶ କରିବାପାଇଁ ଆମେ କୌଣସି ଯୋଜନା ସୁଦ୍ଧା କରିନାହୁଁ। ବିସ୍ତୃତ ଅସଂଗଠିତ କ୍ଷେତ୍ରରେ ବିପୁଳ ସଂଖ୍ୟକ ଶ୍ରମିକମାନଙ୍କ ପାଖରେ ମଧ୍ୟ ଆମକୁ ପହଞ୍ଚିବାକୁ ହେବ। ସି.ଆଇ.ଟି.ୟୁ.ର ସ୍ୱାଧୀନ ପ୍ରଚାର ଅଭିଯାନ ଓ ସଂଗଠନ ଉପରେ ଯୋର ଦେଇ ତାଙ୍କୁ ପାରମ୍ପରିକ ସୀମା ସରହଦ ଅତିକ୍ରମ କରାଇ ବ୍ୟାପକତମ ଅଂଶ ପାଖରେ ପହଞ୍ଚିବା ପ୍ରୟୋଜନ। ଏପରିକି କେରଳ ରାଜ୍ୟରେ ମଧ୍ୟ ୫୦ ଲକ୍ଷ ଶ୍ରମିକ ବିଭିନ୍ନ ୟୁନିୟନରେ ସଂଗଠିତ ହୋଇଥିଲା ବେଳେ ସେଥିରୁ ସି.ଆଇ.ଟି.ୟୁ.ରେ ଅଛି ମାତ୍ର ୮ ଲକ୍ଷ। ସି.ଆଇ.ଟି.ୟୁ.ର ନିଜସ୍ୱ ଶକ୍ତିବୃଦ୍ଧି ନହେଲେ କେନ୍ଦ୍ର ଓ ରାଜ୍ୟ ସରକାରମାନଙ୍କ ଜନବିରୋଧୀ ନୀତି ସବୁ ବିରୋଧରେ ଶକ୍ତିଶାଳୀ ମିଳିତ ଆନ୍ଦୋଳନ କରିହେବ ନାହିଁ। କିମ୍ବା କେତେକ ନୀତି ବଦଳାଇ ହେବ ନାହିଁ। ଟ୍ରେଡ଼ ୟୁନିୟନ ଫ୍ରଣ୍ଟକୁ ପାର୍ଟି ପରିଚାଳିତ କରିବାକୁ ହେଲେ ସେ ଫ୍ରଣ୍ଟର କାମ ସଂପର୍କୀୟ ଆଲୋଚନା ଟ୍ରେଡ଼ ୟୁନିୟନ ନେତାଙ୍କ ଭିତରେ ସୀମାବଦ୍ଧ ରଖିବାର ଧାରା ବଦଳାଇବାକୁ ହେବ। ୧୯୮୩ର ଦଲିଲ ସଠିକ୍‌ଭାବେ ଦର୍ଶାଇଛନ୍ତି ଯେ, ପାର୍ଟିର ହସ୍ତକ୍ଷେପ ବିନା ଶ୍ରମିକମାନଙ୍କ ଭିତରେ ସମାଜବାଦୀ ଚେତନା ସୃଷ୍ଟି କରାଯାଇପାରିବ ନାହିଁ। ଏହା କେବଳ ଟ୍ରେଡ଼ ୟୁନିୟନ ମଞ୍ଚରୁ କରାଯାଇ ପାରେନା। ସୁତରାଂ କେନ୍ଦ୍ର କମିଟି ଠାରୁ ଜିଲ୍ଲା କମିଟିମାନଙ୍କ ପର୍ଯ୍ୟନ୍ତ ଟ୍ରେଡ଼ ୟୁନିୟନ କାମ ସଂପର୍କୀୟ ରିପୋର୍ଟର ଆଲୋଚନା କରିବା ପ୍ରୟୋଜନ ଏବଂ ବିଭିନ୍ନ ରାଜନୈତିକ ପ୍ରଶ୍ନ ସବୁ ପାର୍ଟି ପ୍ରତ୍ୟକ୍ଷଭାବେ ଯେପରି ଶ୍ରମିକମାନଙ୍କ ପାଖକୁ ନେଇଯିବ ସେ ଦିଗରେ ପଦକ୍ଷେପ ଗ୍ରହଣ କରିବା ଦରକାର।

ଟ୍ରେଡ଼ ୟୁନିୟନ ଫ୍ରଣ୍ଟରେ ପାର୍ଟି ଗଠନ ମଧ୍ୟ ଆମ ଟ୍ରେଡ଼ ୟୁନିୟନ (ଟି.ୟୁ.) ଫ୍ରଣ୍ଟ କାମର ଅନ୍ତର୍ଭୁକ୍ତ। ଅତୀତରେ ଶ୍ରମିକ ଶ୍ରେଣୀର କେତେକ ଦେଶବ୍ୟାପୀ କାର୍ଯ୍ୟକ୍ରମକୁ ପାର୍ଟି ଗୁରୁତ୍ୱର ସହ ହାତକୁ ନନେଇ ଟ୍ରେଡ଼ ୟୁନିୟନମାନଙ୍କ ଉଦ୍ୟମଶୀଳତା ଉପରେ ଛାଡି ଦେଇଛି। ଏପ୍ରକାର ମନୋଭାବ ଶ୍ରମିକ ଶ୍ରେଣୀ ଭିତରେ ଆମ କାମର ଗୁରୁତ୍ୱକୁ ନ୍ୟୁନ କରେ ଏବଂ ଟ୍ରେଡ଼ ୟୁନିୟନ କାମକୁ ଅର୍ଥନୀତିବାଦ ସ୍ତରକୁ ଠେଲି ଦିଏ।

ଦୀର୍ଘ ସମୟ ପରେ ହେଲେ ହେଁ, ପାର୍ଟିର କେନ୍ଦ୍ର କମିଟି ଟ୍ରେଡ଼ ୟୁନିୟନ ଫ୍ରଣ୍ଟର କାମକୁ ଯେପରି ଏବେ ପର୍ଯ୍ୟାଲୋଚନା କରୁଛି ରାଜ୍ୟ କମିଟିମାନେ ମଧ୍ୟ ରାଜ୍ୟ ସ୍ତରରେ ଟ୍ରେଡ଼ ୟୁନିୟନ କାମର ସେହିପରି ପର୍ଯ୍ୟାଲୋଚନା କରିବା ଆବଶ୍ୟକ। ଶ୍ରମିକମାନଙ୍କ ରାଜନୈତିକ ଚେତନା ବୃଦ୍ଧି ଓ ସେମାନଙ୍କ ଭିତରେ ପାର୍ଟି ଗଠନ କାମ କିପରି ହେଉଛି ତାର ସମୀକ୍ଷା କରିବା ଦରକାର। ଏହି ଦଲିଲ୍ ଭିତ୍ତିରେ ସେ ସବୁ କରିବା ପରେ ତାର କାର୍ଯ୍ୟକାରୀତା ପାଇଁ ତଳ ସ୍ତରକୁ ନେବେ।

## ୮. ଟ୍ରେଡ୍ ୟୁନିୟନ୍ କେନ୍ଦ୍ରର କାର୍ଯ୍ୟ

ଟ୍ରେଡ୍ ୟୁନିୟନ ଆନ୍ଦୋଳନର ବିକାଶ ଘଟାଇବା ଏବଂ ଶ୍ରମିକ ଶ୍ରେଣୀକୁ ସଂଗଠିତ କରିବାପାଇଁ ସି.ଆଇ.ଟି.ୟୁ. ଦ୍ୱାରା ନିର୍ଦ୍ଧାରିତ ଲକ୍ଷ୍ୟକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ସି.ଆଇ.ଟି.ୟୁ. କେନ୍ଦ୍ରର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି। ଏହାର ମୂଳ ଦାୟିତ୍ୱ ହେଉଛି କେନ୍ଦ୍ରରେ କାର୍ଯ୍ୟ କରୁଥିବା ନେତୃତ୍ୱକାରୀ ପାର୍ଟି ସାଥୀମାନଙ୍କର। ୧୯୯୩ ମସିହା ସମୟର ଘଟଣାବଳୀକୁ ଦୃଷ୍ଟିରେ ରଖି ସି.ଆଇ.ଟି.ୟୁ.ର ସଂଗଠନ ସଂପର୍କୀତ ଭୁବନେଶ୍ୱର ରିପୋର୍ଟ କେନ୍ଦ୍ରର କାର୍ଯ୍ୟକଳାପକୁ ଶକ୍ତିଶାଳୀ କରିବା ପାଇଁ କେତେକ ଗାଇଡ୍‌ଲାଇନ୍ (ନିର୍ଦ୍ଦେଶନାମା) ନିରୂପଣ କରିଥିଲା।

ବିଭିନ୍ନ ଦୀର୍ଘ ମିଆଦି ତଥା ନଗଦ ଲକ୍ଷ୍ୟକୁ କାର୍ଯ୍ୟକାରୀ କରିବା [illegible] ଦେଇ ଅଭିଜ୍ଞତା ଦର୍ଶାଉଛି ଯେ ସଂଗଠନର ନିଷ୍ପତ୍ତିକୁ ଦୃଷ୍ଟିରେ ରଖି ସି.ଆଇ.ଟି.ୟୁ. କେନ୍ଦ୍ର ତାର ବିଭିନ୍ନ କାର୍ଯ୍ୟ ମଧ୍ୟରେ ପ୍ରାଧାନ୍ୟତା କିମ୍ବା କାର୍ଯ୍ୟପନ୍ଥା ପାଇଁ ଯୋଜନା ସ୍ଥିର କରିବାକୁ ସକ୍ଷମ ହୋଇପାରି ନାହିଁ। ଉଦାହରଣସ୍ୱରୂପ, ସି.ଆଇ.ଟି.ୟୁ.ର ସଭ୍ୟ ସଂଖ୍ୟା ୪୦ ଲକ୍ଷରୁ ବୃଦ୍ଧି କରିବା ପାଇଁ କୋଚିନ୍ ସମ୍ମିଳନୀରେ ନିଷ୍ପତ୍ତି କାର୍ଯ୍ୟକାରୀ ନହେବାର ମୂଳ କାରଣ ହେଉଛି ଯୋଜନାବଦ୍ଧ ସାଂଗଠନିକ ଅଭିବୃଦ୍ଧିର ଅଭାବ। ସର୍ବଭାରତୀୟ ସ୍ତରର ସଭା ଗୁଡିକ (ମିଟିଂ)ରେ ବାରମ୍ବାର ନିଷ୍ପତ୍ତି ସତ୍ତ୍ୱେ ଦୁର୍ବଳ ରାଜ୍ୟଗୁଡିକରେ କାର୍ଯ୍ୟକଳାପକୁ ବ୍ୟାପକ କରିବା ଏବଂ ସଂଗଠନକୁ ଶକ୍ତିଶାଳୀ କରିବା କ୍ଷେତ୍ରରେ ଅଧିକ ଧ୍ୟାନ ଦେବାରେ କେନ୍ଦ୍ର ସକ୍ଷମ ହୋଇପାରି ନାହିଁ। ବିଭିନ୍ନ କାର୍ଯ୍ୟର ରୂପାୟନ ପାଇଁ ଯୋଜନା ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ହିନ୍ଦି ଭାଷୀ ରାଜ୍ୟଗୁଡିକର ସି.ଆଇ.ଟି.ୟୁ. ନେତୃତ୍ୱର ବୈଠକ ପାଇଁ କେତେକ ପଦକ୍ଷେପ ଗ୍ରହଣ କରାଯାଇଛି। କିନ୍ତୁ ତାହା ଯଥେଷ୍ଟ ନଥିଲା, କାରଣ, ତାହା ପରେ ପରେ ଆଉ କୌଣସି ଲଗାତର କାର୍ଯ୍ୟକ୍ରମ ନିଆଯାଉନଥିଲା। ସି.ଆଇ.ଟି.ୟୁ.ର ସ୍ୱାଧୀନ ଶକ୍ତିବୃଦ୍ଧି ଏବଂ ମିଳିତ ଆନ୍ଦୋଳନ ଜରିଆରେ ପ୍ରଭାବ ବୃଦ୍ଧି ପାଉଥିବା ନୂତନ ଅଞ୍ଚଳରେ ଶକ୍ତିକୁ ସୁସଂହତ କରିବାପାଇଁ ଆନ୍ଦୋଳନ ଗୁଡିକର ପର୍ଯ୍ୟାଲୋଚନା ହେବା ଆବଶ୍ୟକ। ସଂପାଦକମଣ୍ଡଳୀ କିମ୍ବା ଟ୍ରେଡ୍ ୟୁନିୟନ ସବ୍‌କମିଟି ସ୍ତରରେ ସଠିକ୍ ପର୍ଯ୍ୟାଲୋଚନା ଏବଂ ପରବର୍ତ୍ତୀ କାର୍ଯ୍ୟକ୍ରମ ପାଇଁ ଶିକ୍ଷା ଗ୍ରହଣ ଆମ କାର୍ଯ୍ୟକଳାପର ଅଂଶ ବିଶେଷ ହୋଇ ନାହିଁ।

କେନ୍ଦ୍ରର ବିଭିନ୍ନ କର୍ମକର୍ତ୍ତାମାନେ ନାନାଦି ଦାୟିତ୍ୱ ସଂପାଦନ କରୁଥିବା ବେଳେ ସି.ଆଇ.ଟି.ୟୁ. କେନ୍ଦ୍ରର ଟିମ୍ କାମରେ ଉନ୍ନତି ଆଣିବା ଅପରିହାର୍ଯ୍ୟ ହୋଇ ପଡିଛି। ସାମୁହିକ କାର୍ଯ୍ୟ ପରିବର୍ତ୍ତେ ବିଭିନ୍ନ ନେତାମାନଙ୍କ ମଧ୍ୟରେ ସମନ୍ୱୟ ନଥାଇ କାର୍ଯ୍ୟକ୍ରମମାନ ଯୋଗୁ ୧୯୮୩ ମସିହା ଦଲିଲ ଏବଂ ପରବର୍ତ୍ତୀ ସମୟର ନିଷ୍ପତ୍ତିମାନଙ୍କରେ ଯେଉଁ ଲକ୍ଷ୍ୟ ସ୍ଥିର ହୋଇଥିଲା ତାହା ଗୁରୁତ୍ୱ ହରାଉଛି। ବିଭିନ୍ନ ତତ୍ତ୍ୱଗତ ଏବଂ ନୀତିଗତ ଘଟଣା ଉପରେ ଅନ୍ୟାନ୍ୟ ଟ୍ରେଡ୍ ୟୁନିୟନମାନଙ୍କର ନେତୃତ୍ୱର ସମାଲୋଚନା ପାଇଁ ସି.ଆଇ.ଟି.ୟୁ. କେନ୍ଦ୍ର ଆଗେଇ ଆସିବା ଉଚିତ୍। ଏହା ଫଳରେ ଶ୍ରମିକମାନଙ୍କ ମଧ୍ୟରେ ସି.ଆଇ.ଟି.ୟୁ.ର ସ୍ୱାଧୀନ ଭାବମୂର୍ତ୍ତୀ ବୃଦ୍ଧି ପାଇବ। ସ୍ୱାଧୀନ ଭାବେ ପ୍ରଚାର ଏବଂ କାର୍ଯ୍ୟକଳାପର ଅଭିବୃଦ୍ଧି ଘଟାଇବା ପାଇଁ ଏହା ଅପରିହାର୍ଯ୍ୟ।

ଉପସ୍ଥିତ ଥିବା କର୍ମକର୍ତ୍ତାମାନଙ୍କର ଦୈନିକ ବୈଠକ କ୍ଷେତ୍ରରେ ବର୍ତ୍ତମାନ କେତେକ ଅବନତି ଦେଖା ଦେଇଛି। ମାସିକ କାର୍ଯ୍ୟକ୍ରମ ପାଇଁ ଯୋଜନା ପ୍ରସ୍ତୁତି ଏବଂ ବିଭିନ୍ନ ନିଷ୍ପତ୍ତିର କାର୍ଯ୍ୟକାରୀତା ସଂପର୍କରେ ପର୍ଯ୍ୟାଲୋଚନା ପାଇଁ ବାରମ୍ବାର ବୈଠକ ହେବା ଆବଶ୍ୟକ।

## ୯. ଗୁରୁତ୍ୱପୂର୍ଣ୍ଣ ଶିଳ୍ପମାନଙ୍କରେ ଅବସ୍ଥିତି

ଅର୍ଥନୀତିର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରମାନଙ୍କରେ ଆମର ଅବସ୍ଥିତିକୁ ସୁଦୃଢ଼ କରିବାପାଇଁ ଆମ ପାର୍ଟି ସର୍ବଦା ଜୋର ଦେଇ ଆସୁଛି। ସର୍ବଭାରତୀୟ ସ୍ତରରେ ମିଳିତ ଆନ୍ଦୋଳନ କ୍ଷେତ୍ରରେ ଏହାର ବିଶେଷ ପ୍ରଭାବ ରହୁଥିବା ଦୃଷ୍ଟିରୁ ଆମେ ଆମର ଅବସ୍ଥିତିର ମୂଲ୍ୟାୟନ କରିବାକୁ ହେବ। ସରକାରଙ୍କ ନୀତି ବିରୁଦ୍ଧରେ ସଂଗ୍ରାମ ବେଳେ ଅର୍ଥନୀତିର ଏକ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ରହିଥିବାର ଆଘାତକାରୀ ଶକ୍ତିର ଏକ ଉଲ୍ଲେଖନୀୟ ଭୂମିକା ରହିଛି।

**ପରିବହନ କ୍ଷେତ୍ର :** ସଡ଼କ ପରିବହନ କ୍ଷେତ୍ରରେ ଆମର ଆଖି ଦୃଶିଆ ଉପସ୍ଥିତି ରହିଛି ଏବଂ ଆମର ସଭ୍ୟ ସଂଖ୍ୟା ୨ ଲକ୍ଷରୁ ଅଧିକ। ଆମେ ସି.ଆଇ.ଟି.ୟୁ., ଏଚ୍.ଏମ୍.ଏସ୍.

ଏବଂ ଏ.ଆଇ.ଟି.ୟୁ.ସି. ୟୁନିୟନମାନଙ୍କର ଏକ ମିଳିତ ସମନ୍ୱୟ ସମିତି ଗଠନ କରିବାକୁ ସକ୍ଷମ ହୋଇଛୁ ଏବଂ ଜାତୀୟ ସ୍ତରରେ ମିଳିତ ପ୍ରଚାର ଅଭିଯାନ ଆରମ୍ଭ ହୋଇଛି। କିନ୍ତୁ ୫୦ ଲକ୍ଷରୁ ଉର୍ଦ୍ଧ୍ୱ ଶ୍ରମିକ କାମ କରୁଥିବା ଏହି କ୍ଷେତ୍ରରେ ଆମେ ବର୍ତ୍ତମାନ ସୁଦ୍ଧା ଦୁର୍ବଳ ଅବସ୍ଥାରେ ରହିଛୁ। ଆମେ ସର୍ବଭାରତୀୟ ସଡ଼କ ପରିବହନ ଶ୍ରମିକ ଫେଡ଼େରେସନ୍ ଗଠନ କରିଛୁ। ଏହା ସକ୍ରୀୟ ଅଛି। କିନ୍ତୁ ଦେଶବ୍ୟାପୀ ଆମର କାର୍ଯ୍ୟକ୍ରମକୁ ବିସ୍ତାରିତ କରିବାପାଇଁ ଅଧିକ ଦୃଷ୍ଟି ଦେବା ଆବଶ୍ୟକ। ବସ୍ ପରିବହନ ଶ୍ରମିକ ମାନଙ୍କ କ୍ଷେତ୍ରରେ ଆମର ମୁଖ୍ୟତଃ ପ୍ରଭାବ ରହିଛି। ଦେଶର ବିଭିନ୍ନ ଦୂର ଦୂରାନ୍ତ ଅଞ୍ଚଳରେ ଆମର ପ୍ରଭାବ ବୃଦ୍ଧି ପାଇଁ ମାଲପରିବହନ, ଟ୍ୟାକ୍ସି ଏବଂ ଅଟୋରିକ୍ସା ପରିବହନ କ୍ଷେତ୍ରରେ ଥିବା ଆମର ଦୁର୍ବଳତାକୁ ଦୂର କରିବାକୁ ପଡ଼ିବ।

**ଜଳପରିବହନ :** ବନ୍ଦର ଓ ଡ଼କ୍ ଶିଳ୍ପରେ କାର୍ଯ୍ୟରେ ଥିବା ଫେଡ଼େରେସନ୍‌ମାନଙ୍କ ମଧ୍ୟରେ ଆମର ସ୍ଥାନ ୩ୟରେ। ଏହି କ୍ଷେତ୍ରରେ ଏଚ୍.ଏମ୍.ଏସ୍. ସବୁଠାରୁ ଆଗରେ ଅଛି। ଆମେ କୋଲକାତ୍ୟା, କୋଚି ଏବଂ ଜବାହାରଲାଲ ପୋର୍ଟ ଟ୍ରଷ୍ଟରେ ଶକ୍ତିଶାଳୀ ଅଟୁ। ନାବିକମାନଙ୍କ ମଧ୍ୟରେ ଆମେ କୋଲକାତାରେ ସ୍ୱୀକୃତି ପ୍ରାପ୍ତ ସଂଗଠନ ଅଟୁ। ମୁମ୍ବାଇରେ ଏଚ୍.ଏମ୍.ଏସ୍. ସମସ୍ତଙ୍କଠାରୁ ଆଗରେ। ଆଭ୍ୟନ୍ତରୀଣ ବାଣିଜ୍ୟ କ୍ଷେତ୍ରରେ ଆମର ପ୍ରଭାବ ରହିଛି ଏବଂ ମୁମ୍ବାଇ, କୋଚି ଏବଂ ଲକ୍ଷାଦ୍ୱୀପରେ ଆମେ ସମସ୍ତଙ୍କଠାରୁ ଅଧିକ ଶକ୍ତିଶାଳୀ। ସମସ୍ତ ଉପକୂଳ ଜାହାଜ ପରିବହନ କ୍ଷେତ୍ରରେ ଆମକୁ ଶକ୍ତିଶାଳୀ ହେବାକୁ ପଡ଼ିବ। ସମସ୍ତ ବନ୍ଦର ଓ ଡ଼କ୍ ଶ୍ରମିକମାନଙ୍କ ମଧ୍ୟରେ ୱାଟର ଟ୍ରାନ୍ସପୋର୍ଟ ୱାର୍କର୍ସ ଫେଡ଼େରେସନ୍‌ର ସଭ୍ୟସଂଖ୍ୟା ୧୨ରୁ ୧୫% ମଧ୍ୟରେ। ଏହି ଶିଳ୍ପରେ ପାର୍ଟି ଫ୍ରାକ୍ସନ୍ କାର୍ଯ୍ୟ ଦୁର୍ବଳ। ଏହି ପୁର୍ନଗଠିତ କରି ଶକ୍ତିଶାଳୀ କରିବାକୁ ହେବ।

**ବାୟୁପରିବହନ :** ଇଣ୍ଡିଆନ୍ ଏୟାରଲାଇନ୍ସରେ ଆମର ଆଖିଦୃଶିଆ ଉପସ୍ଥିତି ରହିଛି କିନ୍ତୁ ସାଂଗଠନିକ ସମସ୍ୟା ଯୋଗୁଁ ଆମ କାର୍ଯ୍ୟରେ ଅବର୍ନତି ଘଟିଛି। ଏହି ସମସ୍ୟା ଦୂର ପାଇଁ ଦୃଷ୍ଟି ଦେବାକୁ ପଡ଼ିବ। ଏୟାର ଟ୍ରାନ୍ସପୋର୍ଟ ଅଥରିଟି ଅଫ୍ ଇଣ୍ଡିଆରେ ଆମର ସାଥୀମାନେ ନେତୃତ୍ୱକାରୀ ପଦବୀରେ ରହିଛନ୍ତି। ବେସାମରିକ ପରିବହନ କ୍ଷେତ୍ରରେ ପାର୍ଟି ୟୁନିଟ୍ ଗଠନ୍, କ୍ୟାଡର ମାନଙ୍କ ଶିକ୍ଷା ଏବଂ ଫ୍ରାକ୍ସନ୍ କାର୍ଯ୍ୟ ପରିଚାଳନା ପ୍ରତି ଯଥେଷ୍ଟ ଧ୍ୟାନ ଦିଆଯାଇ ନାହିଁ।

## ଶକ୍ତି କ୍ଷେତ୍ର :

**କୋଇଲା:-** କୋଇଲା କ୍ଷେତ୍ରରେ ଆମ ନିଜ ଶକ୍ତିରେ ଆମେ ଦେଶବ୍ୟାପୀ ଏକ ଧର୍ମଘଟ କରିବାକୁ ସକ୍ଷମ ହୋଇଛୁ। ଏହା ଏକମାତ୍ର ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ର ଯେଉଁଥିରେ କି ଆମେ ଏଭଳି କରିପାରିବା ଭଳି ଅବସ୍ଥାରେ ଅଛୁ। କିନ୍ତୁ କୋଇଲା ଶିଳ୍ପରେ ଥିବା ମୋଟ ଶ୍ରମ ଶକ୍ତିର ମାତ୍ର ୧୫% ଭାଗ ଆମ ସଂଗଠନର ସଭ୍ୟ। ଏହି କ୍ଷେତ୍ରରେ ଆମର କାର୍ଯ୍ୟକ୍ରମକୁ ସୁଦୃଢ଼ କରିବାପାଇଁ ଏହି ଶିଳ୍ପରେ ଥିବା ୨୦୦୦ରୁ ଉର୍ଦ୍ଧ୍ୱ କର୍ମୀଙ୍କୁ ଶିକ୍ଷିତ କରାଯାଇପାରିବ। ଅଗ୍ରାଧିକାର ଭିତ୍ତିରେ କ୍ଲସ୍ ଗୁଡ଼ିକୁ ସଂଗଠିତ କରିବା ଦରକାର। ଖଣି ସ୍ତରୀୟ ଶାଖା ଗୁଡ଼ିକରେ କାର୍ଯ୍ୟକଳାପ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ। ଅଧିକାଂଶ କଂପାନୀ ଗୁଡ଼ିକରେ କର୍ତ୍ତୃପକ୍ଷଙ୍କ ସହ ଆଲୋଚନା କଲାଭଳି ଆମର ଶକ୍ତି ଥିବା ଦୃଷ୍ଟିରୁ ଆମ ସାଥୀମାନଙ୍କର ଏକ ଅଂଶ ମଧ୍ୟରେ ସଂସ୍କାରପନ୍ଥୀ ଭାବଧାରା ପରିଲକ୍ଷିତ ହେବା ଦେଖାଯାଉଛି। ପାର୍ଟି ପକ୍ଷରୁ କେନ୍ଦ୍ରୀୟ ସ୍ତରରେ ଏକ ଫ୍ରାକ୍ସନ୍ ଗଠନ କରିବା ଅତି ଅପରିହାର୍ଯ୍ୟ ହୋଇପଡ଼ିଛି।

**ବିଦ୍ୟୁତ୍ :** ଏହି କ୍ଷେତ୍ରରେ ଆମର ସଭ୍ୟ ସଂଖ୍ୟା ୧ ଲକ୍ଷରୁ ଉର୍ଦ୍ଧ୍ୱ । ଅନ୍ୟାନ୍ୟ ଟ୍ରେଡ଼ ୟୁନିୟନ ଫେଡ଼େରେସନ୍ ଓ ଇଂଜିନିୟରମାନଙ୍କ ସହିତ ଆମେ ଏକ ଯୁକ୍ତଫ୍ରଣ୍ଟ ଗଠନ କରିଛୁ।

ଶକ୍ତି ଶ୍ରମିକମାନଙ୍କର ଏକ ଦେଶବ୍ୟାପୀ ଧର୍ମଘଟ ସଂଗଠିତ କରାଯାଇଥିଲା। କିନ୍ତୁ ଏହା ବିଶେଷ ପ୍ରଭାବଶାଳୀ ହୋଇ ପାରିଲା ନାହିଁ। ଆମ ଫେଡ଼େରେସନ୍ (ଇ.ଇ.ଏଫ୍.ଆଇ.) କେତେକ ଦୁର୍ବଳ ଅଞ୍ଚଳରେ ପ୍ରସାର ଲାଭ କରିବାକୁ ସକ୍ଷମ ହୋଇଛି।

ଇସ୍ପାତ : ଇସ୍ପାତ୍ ଶିଳ୍ପରେ ଆଇ.ଏନ୍.ଟି.ୟୁ.ସି. ପଛକୁ ଆମର ସ୍ଥାନ ୨ୟରେ। ଦୁର୍ଗାପୁର, ଆଲୟ ଷ୍ଟିଲ୍ ପ୍ଲାଣ୍ଟ, ସାଲେମ୍, ସି.ଏମ୍.ଓ. ଏବଂ ଭଦ୍ରାବତୀରେ ଆମର ସଂଗଠନ ସ୍ୱୀକୃତିପ୍ରାପ୍ତ। ଆମେ ଭିଲାଇ, ରାଉରକେଲା ଓ ବୋକାରୋରେ ଦୁର୍ବଳ। ଘରୋଇ ଇସ୍ପାତ୍ କାରଖାନାରେ ଆମର କୌଣସି ୟୁନିୟନ ନାହିଁ। ଷ୍ଟିଲ୍ ଓ୍ୱାର୍କର୍ସ ଫେଡ଼େରେସନ୍ ଅଫ୍ ଇଣ୍ଡିଆ ଧାରାବାହିକ ଭାବେ କାର୍ଯ୍ୟ କରୁଛି ଏବଂ ଇସ୍ପାତ୍ ଶ୍ରମିକମାନେ ସମ୍ମୁଖୀନ ହେଉଥିବା କେତେକ ସାଧାରଣ ସମସ୍ୟା ଉପରେ ଅନ୍ୟାନ୍ୟ ୟୁନିୟନମାନଙ୍କୁ ଏକତ୍ରିତ କରିବାରେ ସକ୍ଷମ ହୋଇପାରିଛି।

ଆର୍ଥୀକ କ୍ଷେତ୍ର : ବୀମା କ୍ଷେତ୍ରରେ ପ୍ରାୟ ୭୦ ଭାଗ କର୍ମଚାରୀଙ୍କୁ ପ୍ରତିନିଧିତ୍ୱ କରୁଥିବା ନିଖିଳ ଭାରତ ବୀମା କର୍ମଚାରୀ ସଂଘ ଆମର ପାର୍ଟି ସାଥୀମାନଙ୍କ ଦ୍ୱାରା ପରିଚାଳିତ। ସମସ୍ତ ଦେଶବ୍ୟାପୀ ମିଳିତ ଆନ୍ଦୋଳନର ସାମନାରେ ବୀମା କର୍ମଚାରୀମାନେ ରହିଛନ୍ତି। ବୀମା କ୍ଷେତ୍ରର ଘରୋଇକରଣ ବିରୁଦ୍ଧରେ ଏବଂ ସାମୂହିକ ମୁଲଚାଲ୍ ଅଧିକାର ଦାବି ଉପରେ ସେମାନେ ବ୍ୟାପକ ଆନ୍ଦୋଳନ କରିଛନ୍ତି। ୟୁନିୟନ ଶକ୍ତିଶାଳୀ ହୋଇଥିବା ବେଳେ ଏବଂ ଆନ୍ଦୋଳନକୁ ସଠିକ୍ ରାଜନୈତିକ ଦିଗଦର୍ଶନ ଦେଇ ପାରୁଥିବା ବେଳେ ଏହି କ୍ଷେତ୍ରରେ ପାର୍ଟି ଗଠନରେ ଅସମ ବିକାଶ ଘଟିଛି।

ବ୍ୟାଙ୍କ : ବ୍ୟାଙ୍କ୍ କ୍ଷେତରେ ବି.ଇ.ଏଫ୍.ଆଇ.ର ସଭ୍ୟ ସଂଖ୍ୟା ୧ ଲକ୍ଷରୁ ଅଧିକ। କେତେକ ବ୍ୟାଙ୍କ୍ ୟୁନିୟନ/ଆମ ପାର୍ଟି ସାଥୀଙ୍କ ନେତୃତ୍ୱାଧୀନ ହେଲେ ବି ବର୍ତ୍ତମାନ ସୁଦ୍ଧା ବ୍ୟାଙ୍କ ଶିଳ୍ପର ସର୍ବବୃହତ୍ ସଂଗଠନ ଏ.ଆଇ.ବି.ଇ.ଏ. ସହ ସହବନ୍ଧିତ (ଏଫିଲିଏଟେଡ୍) ହୋଇ ରହିଛନ୍ତି। ବ୍ୟାଙ୍କ୍ ଶିଳ୍ପର ଘରୋଇକରଣ ବିରୁଦ୍ଧରେ ମିଳିତ ଆନ୍ଦୋଳନ ପାଇଁ ଏହି ଶିଳ୍ପରେ ଅଫିସରମାନଙ୍କ ସଂଗଠନ ସମେତ ଥିବା ୯ଟି ସଂଗଠନ ଏକ ମିଳିତ କମିଟି ଗଠନ କରିଛନ୍ତି। ଆମର ସାଥୀମାନେ ଆଞ୍ଚଳିକ ଗ୍ରାମ୍ୟବ୍ୟାଙ୍କ୍ ଓ ଭାରତୀୟ ରିଜର୍ଭ ବ୍ୟାଙ୍କ୍ ସଂଗଠନରେ ନେତୃତ୍ୱକାରୀ ପଦବୀରେ ରହିଛନ୍ତି। କେତେକ କର୍ମଚାରୀ ସ୍ୱାର୍ଥ ବିରୋଧୀ ଧାରା ଥିବା ଯୋଗୁଁ ଆମେ ନିକଟ ଅତୀତରେ ହୋଇଥିବା ମଜୁରୀ ରାଜିନାମାରେ ସ୍ୱାକ୍ଷର କରିନାହୁଁ। ବ୍ୟାଙ୍କ୍ ଗୁଡିକ ଦ୍ୱାରା ଆମେ ଆକ୍ରୋଶମୂଳକ କାର୍ଯ୍ୟାନୁଷ୍ଠାନର ଶୀକାର ହୋଇଛୁ।

ରାଷ୍ଟ୍ରାୟତ୍ତ ଉଦ୍ୟୋଗ : ରାଷ୍ଟ୍ରାୟତ୍ତ ଉଦ୍ୟୋଗ କ୍ଷେତ୍ରରେ ଜାତୀୟ ସ୍ତରରେ ଆମେ ଏକ ନେତୃତ୍ୱକାରୀ ଭୂମିକା ପାଳନ କରୁଛୁ। ଏନ୍.ଟି.ପି.ସି., ବି.ଏଚ୍.ଇ.ଏଲ୍., ହିନ୍ଦୁସ୍ଥାନ ପେଟ୍ରୋଲିୟମ୍, ଓ.ଏନ୍.ଜି.ସି. ଏବଂ ଆଉ କେତେକ ଶିଳ୍ପରେ ଆମେ ଆମ ସ୍ଥିତିରେ ଉନ୍ନତି ଆଣିଛୁ। ଅଧିକାଂଶ ବୃହତ ଶିଳ୍ପରେ ଆଲୋଚନା କରିବା ଭଳି ମର୍ଯ୍ୟାଦା (Negotiating Status) ଆମର ରହିଛି କିନ୍ତୁ ଆମର ସଭ୍ୟ ସଂଖ୍ୟା ଦୁର୍ବଳ। ଆମେ ଦୁର୍ବଳ ଅବସ୍ଥାରେ ଥିବା ବାଙ୍ଗାଲୋର ଭିତ୍ତିକ ଶିଳ୍ପ ଗୁଡିକରେ କେତେକ ଉନ୍ନତି ଘଟିଛି। କେତେକ ୟୁନିଟ୍‌ରେ ଆମ ୟୁନିୟନମାନଙ୍କର ଅତି ଅଳ୍ପ ସଂଖ୍ୟକ ସଭ୍ୟ ରହିଛନ୍ତି। ଆମେ ଅଧିକାଂଶ ଶ୍ରମିକଙ୍କ ନିକଟରେ ପହଞ୍ଚିବାକୁ ସକ୍ଷମ ହୋଇ ପାରିନାହୁଁ। ଏହି ସମସ୍ତ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ୟୁନିଟ୍ ଗୁଡିକରେ ପାର୍ଟି ଗଠନ ପାଇଁ ଆବଶ୍ୟକୀୟ ଦୃଷ୍ଟି ଦିଆଯାଇ ପାରି ନାହିଁ।

ବି.ଏସ୍.ଏନ୍.ଏଲ୍. : ଟେଲି କମ୍ୟୁନିକେସନ୍ ବିଭାଗ କର୍ପୋରେସନ୍‌ରେ ପରିଣତ ହେବା ପରେ ଆମ ନେତୃତ୍ୱାଧୀନ ବି.ଏସ୍.ଏନ୍.ଏଲ୍. ୟୁନିୟନ ଏକ ବୃହତ ଶକ୍ତିରେ ପରିଣତ ହୋଇଛି। ଏହି ରାଷ୍ଟ୍ରାୟତ୍ତ ଉଦ୍ୟୋଗରେ ୩ ଲକ୍ଷ ଅଣ-ଏକ୍‌ଜିକ୍ୟୁଟିଭ କର୍ମଚାରୀ ରହିଛନ୍ତି। ସ୍ୱୀକୃତି ପାଇଁ ନିକଟରେ ହୋଇଥିବା ଭୋଟ୍‌ରେ ଓ.ପି. ଗୁପ୍ତାଙ୍କ ୟୁନିୟନ ସ୍ୱୀକୃତି ଲାଭ କରିଛି। ଏହା ୩୫% ଭୋଟ୍ ପାଇଥିବା ବେଳେ ଆମ ନେତୃତ୍ୱାଧୀନ ବି.ଏସ୍.ଏନ୍.ଏଲ୍.ଇ.ୟୁ. ୮୯,୪୯୬ ଭୋଟ ଅର୍ଥା ୩୦% ଭୋଟ୍ ପାଇଛି। ମହାରାଷ୍ଟ୍ର ଓ କର୍ଣ୍ଣାଟକରେ କମ୍ କର୍ମଚାରୀଙ୍କ ଭୋଟ ଦେବା ଆମର ମୁଖ୍ୟ ଦୁର୍ବଳତା ଭାବେ ପରିଲକ୍ଷିତ ହୋଇଛି। ହିନ୍ଦୀ ଭାଷୀ ଅଞ୍ଚଳ ମଧ୍ୟରେ ବିହାର, ଝାଡ଼ଖଣ୍ଡ ଏବଂ ଉତ୍ତରପ୍ରଦେଶ (ପଶ୍ଚିମ)ରେ ଆମେ ଖରାପ କରିଛୁ। ଏହି ଫ୍ରଣ୍ଟରେ ସଂଗଠନକୁ ଶକ୍ତିଶାଳୀ କରିବାପାଇଁ ପାର୍ଟି ରାଜ୍ୟ କମିଟିମାନେ ସାଥୀମାନଙ୍କୁ ଗାଇଡ୍ କରିବା କ୍ଷେତ୍ରରେ ବିଶେଷ ଧ୍ୟାନ ଦେବା ଉଚିତ୍।

ପାର୍ଟି ଗଠନ / ପାର୍ଟି ଫ୍ରାକ୍ସନ୍ : ଗୁରୁତ୍ୱପୂର୍ଣ୍ଣ ଏବଂ ବୃହତ୍ ଶିଳ୍ପ ଗୁଡିକରେ ପାର୍ଟି ଗଠନ ଏବଂ ପାର୍ଟି ଫ୍ରାକ୍ସନ କମିଟିମାନଙ୍କର ଭୂମିକା ପ୍ରଶ୍ନକୁ ଅତି ଗୁରୁତ୍ୱର ସହ ବିଚାର କରିବା ଆବଶ୍ୟକ। ଆମ ପାଖରେ ଯେଉଁ ଅଳ୍ପ କିଛି ରିପୋର୍ଟ ଅଛି ସେଥିରୁ ଜଣାଯାଏ ଯେ ଏହି ମୌଳିକ କାର୍ଯ୍ୟ ଧାରାବାହିକ ଭାବେ ଅବହେଳିତ ହୋଇ ଆସୁଛି। ଆମ ପାଖକୁ ଆସିଥିବା ରିପୋର୍ଟ ଗୁଡିକ ମଧ୍ୟରୁ ଗୋଟିଏ ଉଦାହରଣରୁ ଏହା ସ୍ପଷ୍ଟ। ନିଖିଳ ଭାରତ ବୀମା କର୍ମଚାରୀ ସଂଘ ଆମ ପାର୍ଟି ନେତୃତ୍ୱାଧୀନ ଅନ୍ୟତମ ଶକ୍ତିଶାଳୀ ସଂଗଠନ। ବିଭିନ୍ନ ରାଜ୍ୟରେ ବୀମା ଫ୍ରଣ୍ଟର ସାଥୀମାନେ ପାର୍ଟିକୁ ବିଭିନ୍ନ ବାଟରେ ସାହାର୍ଯ୍ୟ କରୁଛନ୍ତି। ତଥାପି ପାର୍ଟି ଗଠନ ଏବଂ ସଭ୍ୟ ସଂଖ୍ୟା ସଂକ୍ରାନ୍ତରେ କେନ୍ଦ୍ରୀୟ ଫ୍ରାକ୍ସନ୍ କମିଟି ଯେଉଁ ରିପୋର୍ଟ ଦେଇଛି ସେଥିରୁ ବାସ୍ତବ ପରିସ୍ଥିତିର ସୂଚନା ମିଳିଥାଏ। ଯେଉଁ ସମସ୍ତ ରାଜ୍ୟ ଗୁଡିକରେ ଅଧିକ ସଂଖ୍ୟକ ପାର୍ଟି ସଭ୍ୟ ରହିଛନ୍ତି ସେଗୁଡିକ ହେଲା- ତାମିଲନାଡୁ-୪୫୯, ପଶ୍ଚିମବଂଗ-୨୭୬, କେରଳ-୧୫୦, ଆନ୍ଧ୍ରପ୍ରଦେଶ-୯୧ ଏବଂ କର୍ଣ୍ଣାଟକ-୮୪। ଅନ୍ୟାନ୍ୟ ରାଜ୍ୟମାନଙ୍କରେ ପାର୍ଟି ସଭ୍ୟ ସଂଖ୍ୟା ତୁଳନାତ୍ମକଭାବେ ଅତି କମ୍। ଉତ୍ତରାଞ୍ଚଳ ରାଜ୍ୟମାନଙ୍କ ମଧ୍ୟରେ ବିହାରରେ ୧୪, ଉତ୍ତରପ୍ରଦେଶରେ ୧୦ରୁ କମ୍, ରାଜସ୍ଥାନ-୬, ହରିଆନା-୪, ମଧ୍ୟପ୍ରଦେଶ-୭ ଏବଂ ଛତିଶଗଡ-୨୪। ହିମାଚଳ ଓ ଦିଲ୍ଲୀର ଅବସ୍ଥା ସାମାନ୍ୟ ଭଲ। ହିମାଚଳପ୍ରଦେଶରେ ୩୯ ଓ ଦିଲ୍ଲୀରେ ୧୫ଜଣ ସଭ୍ୟ ଅଛନ୍ତି। ମହାରାଷ୍ଟ୍ରରେ ୧୪, ପଂଜାବ (ଚଣ୍ଡୀଗଡ ସମେତ)ରେ ୧୯ ଜଣ ସଭ୍ୟ। ଏହି ସଂଖ୍ୟାରୁ ସ୍ପଷ୍ଟ ଯେ ଅତି ଶକ୍ତିଶାଳୀ ୟୁନିୟନରେ ମଧ୍ୟ ପାର୍ଟି ଗଠନ କ୍ଷେତ୍ରରେ ଦୁର୍ବଳତା ରହିଛି। ଏପରିକି ଏହି ସମସ୍ତ କ୍ଷେତ୍ରରେ କେତେଜଣ ପାର୍ଟି ସଭ୍ୟ ଅଛନ୍ତି ତାହା ଖବର ମଧ୍ୟ କେତେକ ଦୁର୍ବଳ ରାଜ୍ୟ କମିଟି ପାଖରେ ନାହିଁ।

ସି.ଆଇ.ଟି.ୟୁ. ବାହାରେ ଥିବା ସମସ୍ତ ଟ୍ରେଡ୍ ୟୁନିୟନ ଗୁଡିକ କ୍ଷେତ୍ରରେ ପାର୍ଟି ଫ୍ରାକ୍ସନ କମିଟି ଓ ପାର୍ଟି ଗଠନ ପ୍ରତି ଅଧିକ ଦୃଷ୍ଟି ଦେବାକୁ ପଡ଼ିବ। ବୀମା, ଏଫ୍.ଏମ୍.ଆର୍.ଏ. ଆଇ. (ମେଡ଼ିକାଲ ରିପ୍ରେଜେଣ୍ଟେଟିଭ୍), ଟେଲିକମ୍ୟୁନିକେସନ୍ ଆଦି ପ୍ରତି ଅଧିକ ଧ୍ୟାନ ଦେଇ ବିକାଶ ଘଟାଇବାକୁ ପଡ଼ିବ।

## ୧୦. ଅସଂଗଠିତ କ୍ଷେତ୍ରରେ କାର୍ଯ୍ୟ

ଦେଶରେ ପ୍ରଯୁକ୍ତିଗତ ଅଗ୍ରଗତି ସତ୍ତ୍ୱେ ଏବେ ବି କ୍ଷୁଦ୍ର ଶିଳ୍ପ ଉତ୍ପାଦନ ଭାରତୀୟ ଅର୍ଥନୀତିରେ ମୁଖ୍ୟ ସ୍ଥାନ ଅଧିକାର କରୁଛି ଏବଂ ଆମ ଶ୍ରମିକ ଶ୍ରେଣୀର ବିପୁଳ ସଂଖ୍ୟାଗରିଷ୍ଠ

ଅଂଶ ଅସଂଗଠିତ କ୍ଷେତ୍ରରେ କାର୍ଯ୍ୟ କରୁଛନ୍ତି। ଅସଂଗଠିତ ଶ୍ରମିକମାନଙ୍କ ମଧ୍ୟରୁ ସର୍ବାଧିକ ସଂଖ୍ୟକ ଶ୍ରମିକ କୃଷି କ୍ଷେତ୍ରରେ କାର୍ଯ୍ୟ କରନ୍ତି।

ବହୁ ସଂଖ୍ୟାରେ ଅସଂଗଠିତ ଶ୍ରମିକ କାର୍ଯ୍ୟ କରୁଥିବା ବିଡ଼ି, ଚା ଓ କଫି ବଗିଚା, ନିର୍ମାଣ, ପୋଷାକ, ହସ୍ତତନ୍ତ, କତା ଓ କାଜୁବାଦାମ ଆଦି କ୍ଷେତ୍ରରେ ଆମ୍ଭେମାନେ ଆମ୍ଭର କାର୍ଯ୍ୟ ବୃଦ୍ଧି କରିବାକୁ ସକ୍ଷମ ହୋଇଛେ। ଅଖିଳ ଭାରତ କୃଷକ ସଭା ସହ ଆମ୍ଭେମାନେ ମତ୍ସ୍ୟ ଶ୍ରମିକମାନଙ୍କର ଏକ ମିଳିତ ମହାସଂଘ ଗଠନ କରିଛେ। ଇଟାଭାଟି ଶ୍ରମିକମାନଙ୍କ ମଧ୍ୟରେ ଆମର କାର୍ଯ୍ୟର ମଧ୍ୟ କିଛିଟା ଅଗ୍ରଗତି ହୋଇଛି। କିନ୍ତୁ ଅସଂଗଠିତ ଶ୍ରମିକମାନଙ୍କର ସଂଖ୍ୟାର ବିଶାଳତା ଦୃଷ୍ଟିରୁ ଆମର ପ୍ରଭାବ ଏବେ ବି ଅତି ସାମାନ୍ୟ। ଅନେକ ରାଜ୍ୟର ସହରାଞ୍ଚଳରେ ସେବା କ୍ଷେତ୍ରରେ ଅସଂଗଠିତ ଶ୍ରମିକମାନଙ୍କୁ ଆମ୍ଭେମାନେ ସଂଗଠିତ କରିଛୁ। ଆମକୁ ଗ୍ରାମାଞ୍ଚଳରେ ଉତ୍ପାଦନ କ୍ଷେତ୍ରରେ ନିୟୋଜିତ ବିଶାଳ ସଂଖ୍ୟାର କାରିଗରମାନଙ୍କୁ ସଂଗଠିତ କରିବାକୁ ପଡ଼ିବ। ଅସଂଗଠିତ ଶ୍ରମିକମାନଙ୍କର ଜୀବନ ଜୀବିକାର ସୁରକ୍ଷା ପାଇଁ କୌଣସି ଆଇନ୍ ନଥିବାରୁ ଏହି ଶ୍ରମିକମାନଙ୍କୁ ସଂଗଠିତ କରିବାରେ ବାଧା ସୃଷ୍ଟି ହେଉଛି। ଭାରତର କୃଷି ଶ୍ରମିକ ଓ ଅସଂଗଠିତ ଶ୍ରମିକମାନଙ୍କ ପାଇଁ ଏପରି ଏକ ଆଇନ୍ ପ୍ରଣୟନ କରିବା ଲାଗି ଆମ୍ଭେମାନେ ସଂଗ୍ରାମ କରୁଛୁ।

ଉଦାରୀକରଣ ନୀତି ଫଳରେ ସଂଗଠିତ ଶ୍ରମିକମାନଙ୍କ ମଧ୍ୟରୁ ଏକ ଉଲ୍ଲେଖନୀୟ ଅଂଶ ଅସଂଗଠିତ କ୍ଷେତ୍ରକୁ ଠେଲି ହୋଇ ଯାଉଛନ୍ତି। ଠିକା ଶ୍ରମିକ ନିଯୁକ୍ତିକୁ ପ୍ରୋତ୍ସାହିତ କରିବାର ସରକାରୀ ନୀତି ଫଳରେ ଅସଂଗଠିତ ଶ୍ରମିକଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି। ଅଧିକାଂଶ କ୍ଷେତ୍ରରେ ଦାରିଦ୍ର୍ୟ ସୀମାରେଖା ତଳେ ସର୍ବନିମ୍ନ ମଜୁରୀ ନିର୍ଦ୍ଧାରଣ କରାଯାଉଛି ଏବଂ ସେତକ ମଧ୍ୟ ଠିକ୍ ଭାବରେ ଲାଗୁ କରାଯାଉ ନାହିଁ।

ଏ କ୍ଷେତ୍ରରେ ଆହୁରି ଯୋଜନାବଦ୍ଧ କାର୍ଯ୍ୟର ଆବଶ୍ୟକତା ରହିଛି। ଏବେ ଘରୋଇକାମରେ ନିଯୁକ୍ତ ଶ୍ରମିକଙ୍କ ସଂଖ୍ୟା ବଢ଼ୁଛି ଏବଂ ସେମାନଙ୍କ ମଧ୍ୟରେ ଅଧିକାଂଶ ମହିଳା ଶ୍ରମିକ। ରପ୍ତାନୀ ପ୍ରୋତ୍ସାହନ ଅଞ୍ଚଳର (Export Promotion Zone ବା EPZ) ଶ୍ରମିକମାନେ ମଧ୍ୟ ଅସଂଗଠିତ ଶ୍ରମିକ ଶ୍ରେଣୀ ଏବଂ ସେଠାରେ ଶ୍ରମିକ ସଂଗଠନ ଗଢ଼ିବାର ଅଧିକାର ନଥିବା ସତ୍ତ୍ୱେ ନାନା ଆକ୍ରୋଶମୂଳକ କାର୍ଯ୍ୟାନୁଷ୍ଠାନର ସାମନା କରି ସି.ଆଇ.ଟି.ୟୁ. ଇ.ପି.ଜେଡ୍.ର ଶ୍ରମିକମାନଙ୍କୁ ସଂଗଠିତ କରିବାର ଉଦ୍ୟମ ନେଇଛି।

ଘରୋଇ କ୍ଷେତ୍ରରେ ଥିବା ବିକ୍ରୟ ଓ ବିପଣନ, ଖୁଚୁରା ବ୍ୟବସାୟ, ହୋଟେଲ, ହସ୍ପିଟାଲ, ନିରାପତ୍ତା, ପରିବହନ ଓ ଆର୍ଥିକ ସେବା ଆଦି କ୍ଷେତ୍ରରେ ବହୁ ସଂଖ୍ୟାରେ ଧୋବଧାଉଳିଆ କର୍ମଚାରୀ କାର୍ଯ୍ୟ କରୁଛନ୍ତି। ଉଦାରୀକରଣ ନୀତି ପ୍ରଚଳନ ହେବା ପରେ ଏହି ପ୍ରକ୍ରିୟା ବଢ଼ି ଚାଲିଛି। ଏ କ୍ଷେତ୍ରରେ ଲକ୍ଷ ଲକ୍ଷ କର୍ମଚାରୀ କାମ କରୁଛନ୍ତି ଯେଉଁମାନେ ଠିକା, ଅସ୍ଥାୟୀ ବା ଆତ୍ମନିଯୁକ୍ତି ପ୍ରାପ୍ତ ଅଣଆନୁଷ୍ଠାନିକ କ୍ଷେତ୍ରର ଶ୍ରମିକ। ସେମାନଙ୍କର ଚାକିରି ସର୍ତ୍ତାବଳୀକୁ ବିଚାରକୁ ନେଇ ଆମ୍ଭମାନଙ୍କୁ ସେମାନଙ୍କୁ ସଂଗଠିତ କରିବାପାଇଁ ଧ୍ୟାନ ଦେବାକୁ ପଡ଼ିବ। ଏହି ନୂଆ କ୍ଷେତ୍ରରେ ସମସ୍ୟାକୁ ବୁଝିବା ପରି ଶିକ୍ଷିତ କର୍ମୀମାନଙ୍କୁ ବାଛିବାକୁ ହେବ ଏବଂ ନିୟୋଜିତ କରିବାକୁ ପଡ଼ିବ।

ଶିଳ୍ପଗୁଡିକର ପୁନର୍ଗଠନ ଚାଲିଥିବା ସମୟରେ ଏବଂ ସଂଗଠିତ କ୍ଷେତ୍ରରେ ନିଯୁକ୍ତି ସଂକୁଚିତ ହେଉଥିବା ସମୟରେ ଅସଂଗଠିତ କ୍ଷେତ୍ରର ବ୍ୟାପକ ସଂଖ୍ୟକ ଶ୍ରମିକଙ୍କୁ ସଂଗଠିତ କରିବା ଏକାନ୍ତ ଜରୁରୀ। ଶକ୍ତିଶାଳୀ ଶ୍ରମିକ ଶ୍ରେଣୀ ଆନ୍ଦୋଳନ ପାଇଁ ଏହା ଜରୁରୀ। ଏପ୍ରକାର

ଅତ୍ୟାଧିକ ମାତ୍ରାରେ ଅବହେଳିତ ଅଂଶର ଶ୍ରମିକମାନଙ୍କୁ ସଂଗଠିତ କରିବା କାର୍ଯ୍ୟକୁ ଜୋରଦାର କରିବାପାଇଁ ପାର୍ଟି କମିଟିମାନେ ଯୋଜନା କରିବା ଉଚିତ୍। ଏହାଫଳରେ ବ୍ୟାପକ ସଂଖ୍ୟାରେ ଶ୍ରମିକମାନଙ୍କୁ ସଂଗ୍ରାମରେ ସାମିଲ କରି ଶ୍ରେଣୀ ସଂଗ୍ରାମକୁ ପ୍ରଖର କରିହେବ।

## ୧୧) ଶ୍ରମିକ-କୃଷକ ମୈତ୍ରୀ ପ୍ରତିଷ୍ଠା

ଶ୍ରମିକ-କୃଷକ ମୈତ୍ରୀ ପ୍ରତିଷ୍ଠା ସଂପର୍କରେ ଖାଲି ଭାଷଣ ଦେଇ ଦେଲେ ବା କୃଷକ ସମାଜର ସଂଗ୍ରାମ ପ୍ରତି ସଂହତି ଜଣାଇ ପ୍ରସ୍ତାବ ପାଶ କରିଦେଲେ ଯଥେଷ୍ଟ ନୁହେଁ। ବାସ୍ତବ କ୍ଷେତ୍ରରେ ଟ୍ରେଡ୍ ୟୁନିୟନ୍‌ମାନେ କୃଷକ ଓ କୃଷି ଶ୍ରମିକଙ୍କ ସମସ୍ୟା ଉପରେ ଆନ୍ଦୋଳନକୁ ହାତକୁ ନେବା ଜରିଆରେ ହିଁ ଶ୍ରମିକ-କୃଷକ ମୈତ୍ରୀ ପ୍ରତିଷ୍ଠା ସମ୍ଭବ। ଯଦିଓ ଏ ଦିଗରେ ବିଶେଷ କିଛି ଅଗ୍ରଗତି ହୋଇ ନାହିଁ, ତାମିଲନାଡୁ ଓ ଆନ୍ଧ୍ରପ୍ରଦେଶର ଟ୍ରେଡ୍ ୟୁନିୟନମାନେ ଏଥିଲାଗି କେତେକ ପଦକ୍ଷେପ ନେଇଛନ୍ତି। କୃଷକ ସଭା ଓ କୃଷି ଶ୍ରମିକ ସଂଗଠନମାନଙ୍କ ସାହାଯ୍ୟାର୍ଥେ ସେମାନେ ପ୍ରତିବର୍ଷ ଟ୍ରେଡ୍ ୟୁନିୟନ୍‌ର ସଦସ୍ୟମାନଙ୍କଠାରୁ ଅର୍ଥ ଆଦାୟ କରୁଛନ୍ତି। ଏହା ଏକ ପ୍ରଶଂସନୀୟ ପଦକ୍ଷେପ। ଏହା ଫଳରେ ଏହି ଅଂଶର ଶ୍ରମଜୀବୀମାନଙ୍କୁ ସାଙ୍ଗରେ ନେବାର ଆବଶ୍ୟକତା ସଂପର୍କରେ ଶ୍ରମିକ ଶ୍ରେଣୀ ମଧ୍ୟରେ ଏକ ନୂତନ ଚେତନା ସୃଷ୍ଟି ହେଉଛି।

ଶ୍ରମିକ-କୃଷକ ମୈତ୍ରୀ ପ୍ରତିଷ୍ଠା ପ୍ରଶ୍ନକୁ ବିଚାର କରିବା ନିମନ୍ତେ ସି.ଆଇ.ଟି.ୟୁ. ଓ କୃଷକ ସଭାର ଗୋଟିଏ ମାତ୍ର ମିଳିତ ବୈଠକ ହୋଇଛି। ମାତ୍ର ଜାତୀୟ ସ୍ତରରେ ମତ୍ସ୍ୟଜୀବୀ ଶ୍ରମିକମାନଙ୍କର ଏକ ମିଳିତ ମହାସଂଘ ଗଠନ ବ୍ୟତୀତ ଏଥିରେ ଅନ୍ୟ କୌଣସି ଆଲୋଚନା ହୋଇ ନାହିଁ।

ପାର୍ଟି କମିଟିମାନେ ଏ ଦିଗରେ ପଦକ୍ଷେପ ନେବା ଆବଶ୍ୟକ। ବଳିଷ୍ଠ ଟ୍ରେଡ୍ ୟୁନିୟନ ଥିବା ଏବଂ ସେଥିରେ ପାର୍ଟି ସଭ୍ୟମାନେ କାର୍ଯ୍ୟକରୁଥିବା କ୍ଷେତ୍ରକୁ ନିର୍ଦ୍ଦିଷ୍ଟ ଭାବେ ଚିହ୍ନଟ କରିବା ଦରକାର। ଶ୍ରମିକ ଏବଂ କୃଷକ / କୃଷି ଶ୍ରମିକମାନେ ମିଳିତ ଭାବେ ହାତକୁ ନେଲା ପରି ସାଧାରଣ ସମସ୍ୟା ଗୁଡିକୁ ସ୍ଥିର କରିବାକୁ ପଡ଼ିବ। ଏହାରି ଭିତ୍ତିରେ ଟ୍ରେଡ୍ ୟୁନିୟନ ଏବଂ କୃଷକ ସଭା ବା କୃଷି ଶ୍ରମିକ ୟୁନିୟନମାନଙ୍କ ପକ୍ଷରୁ ଯୌଥ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇ ପାରିବ। ଗଣବଣ୍ଟନ ବ୍ୟବସ୍ଥା ପରି ଉଭୟ ଶିଳ୍ପ ଶ୍ରମିକ ଓ ଗ୍ରାମୀଣ ଦରିଦ୍ରମାନଙ୍କୁ ଆକ୍ରାନ୍ତ କରୁଥିବା ସମସ୍ୟା ଗୁଡିକ ତୁରନ୍ତ ହାତକୁ ନିଆଯାଇପାରିବ। ଠିକ୍ ସେହିପରି ଭାବେ ରାସ୍ତାଘାଟ, ଜଳ ଯୋଗାଣ ଓ ବିଦ୍ୟୁତ୍ ଯୋଗଣ ଆଦି ସ୍ଥାନୀୟ ବିକାଶର ସମସ୍ୟା ଯାହାକି ସଂପୃକ୍ତ ଅଞ୍ଚଳର ଶ୍ରମଜୀବୀ ଜନଗଣଙ୍କୁ ନୟାନ୍ତ କରୁଛି ସେଗୁଡିକୁ ମଧ୍ୟ ହାତକୁ ନିଆଯାଇ ପାରିବ। ଏବେ ମରୁଡ଼ି ଯୋଗୁଁ କୃଷକ ସମାଜ ଉତ୍କଟ ସମସ୍ୟାର ସମ୍ମୁଖୀନ। ଏସବୁ ସମସ୍ୟାକୁ ଟ୍ରେଡ୍ ୟୁନିୟନମାନଙ୍କୁ ହାତକୁ ନେବାକୁ ପଡ଼ିବ ଏବଂ କୃଷକ ସଭା ଓ କୃଷି ଶ୍ରମିକ ସଂଗଠନମାନଙ୍କ ସହିତ ମିଳିତଭାବେ ସ୍ଥାନୀୟ ଆନ୍ଦୋଳନ ଗଢ଼ି ତୋଳିବାକୁ ପଡ଼ିବ।

ଶ୍ରମିକ ଓ କୃଷକମାନଙ୍କର ଯୌଥ କାର୍ଯ୍ୟକ୍ରମ ସଂଗଠିତ କରିବା ଏବଂ ବାସ୍ତବ ଶ୍ରମିକ-କୃଷକ ମୈତ୍ରୀ ପ୍ରତିଷ୍ଠା କ୍ଷେତ୍ରରେ ଉଦ୍ୟମକୁ ପଲିଟ୍‌ବ୍ୟୁରୋ ଓ କେନ୍ଦ୍ର କମିଟିଙ୍କୁ ତଦାରଖ କରିବାକୁ ପଡ଼ିବ।

## ୧୨. ବର୍ଦ୍ଧିଷ୍ଣୁ ବେକାରୀ ବିରୁଦ୍ଧରେ ସଂଗ୍ରାମ

ଜଗତିକରଣ ଓ ଉଦାରୀକରଣ ନୀତି ଜରିଆରେ ଶ୍ରମିକମାନଙ୍କର ସଂଖ୍ୟା ହ୍ରାସ କରିବା ପୁଂଜିପତି ଶ୍ରେଣୀର ମୂଳ ଲକ୍ଷ୍ୟ ହୋଇଛି। ଗତ ଦଶନ୍ଧିରେ ସଂଗଠିତ କ୍ଷେତ୍ରରେ ନିଯୁକ୍ତି ଅତ୍ୟଧିକ ଭାବରେ ହ୍ରାସ ପାଇଛି। ସହରାଞ୍ଚଳରେ ବେକାର ସଂଖ୍ୟା ୪ କୋଟି ଟପିଯାଇଛି ଏବଂ ଗ୍ରାମାଞ୍ଚଳରେ ୮ କୋଟିରୁ ଅଧିକ ହୋଇଛି। ଏପରି ଏକ ବିଶାଳ ବେକାରୀ ବାହିନୀ ଯୋଗୁଁ ଭାରତର ଶିଳ୍ପ କ୍ଷେତ୍ରରେ ପରିସ୍ଥିତି ସଂଗୀନ୍ ହୋଇ ପଡ଼ିଛି। କେବଳ ମାତ୍ର ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ସ୍ୱେଚ୍ଛା ଅବସର ଯୋଜନା (ଭି.ଆର୍.ଏସ୍.) ଜରିଆରେ ୩ ଲକ୍ଷ ଶ୍ରମିକ ଜୀବିକା ହରାଇଛନ୍ତି। ଘରୋଇ କ୍ଷେତ୍ରରେ ଉଦ୍‌ବୃତ୍ତ ଶ୍ରମିକଙ୍କ ସଂଖ୍ୟା ପ୍ରାୟ ୪୫ ଲକ୍ଷରେ ପହଞ୍ଚିଛି।

ଏପରିକି କେନ୍ଦ୍ର ସରକାରୀ ଅଫିସ୍ ଗୁଡ଼ିକରେ ଖାଲିଥିବା ପଦପଦବୀ ପୂରଣ ନହୋଇ ପଡି ରହିଛି ଏବଂ ବର୍ଷକୁ ୨% ହାରରେ ଶ୍ରମଶକ୍ତି କମାଇବା ପାଇଁ କେନ୍ଦ୍ର ସରକାରଙ୍କର ନିଷ୍ପତ୍ତି ଫଳରେ କର୍ମନିଯୁକ୍ତି ଲୀନ ହେବାରେ ଲାଗିଛି। ରାଜ୍ୟ ସରକାରମାନଙ୍କ ପାଇଁ ମଧ୍ୟ ଶ୍ରମଶକ୍ତି ହ୍ରାସ କରିବା ଏକ ନୀତିରେ ପରିଣତ ହୋଇଛି।

ଚାକିରୀ ହରାଇ ବେକାର ହୋଇଥିବା ଏବଂ ଚାକିରୀ ନପାଇ ବେକାର ହୋଇ ରହିଥିବା ସର୍ବହରା ଓ ଅର୍ଦ୍ଧ ସର୍ବହରା ପରିବାରର ଲକ୍ଷ ଲକ୍ଷ ଯୁବକ ଯୁବତୀମାନଙ୍କ ନିକଟରେ ଟ୍ରେଡ୍ ୟୁନିୟନମାନଙ୍କୁ ପହଞ୍ଚିବାକୁ ପଡ଼ିବ। ସେମାନେ ଶ୍ରମିକ ଶ୍ରେଣୀର ଅଂଶବିଶେଷ। ସେମାନଙ୍କ ସମସ୍ୟାଗୁଡ଼ିକୁ ଡ଼ି.ୱାଇ.ଏଫ୍.ଆଇ ଓ ଅନ୍ୟାନ୍ୟ ଗଣସଂଗଠନ ସହ ମିଳିତ ଭାବେ ଏବଂ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ପକ୍ଷରୁ ଏକକ ଭାବେ ହାତକୁ ନେବାକୁ ପଡ଼ିବ। ଦଶବର୍ଷ ତଳେ ସି.ଆଇ.ଟି.ୟୁ. ପକ୍ଷରୁ ''କାମ କରିବାର ଅଧିକାର'' ଉପରେ ଆୟୋଜିତ କନ୍‌ଭେନ୍‌ସନ୍ ପରେ ଏ ଦିଗରେ କୌଣସି ଉଲ୍ଲେଖନୀୟ ପଦକ୍ଷେପ ନିଆଯାଇ ନାହିଁ। ଉଦାରୀକରଣ ନୀତି ବିରୁଦ୍ଧରେ ସଂଗ୍ରାମର ଅଂଶ ଭାବେ ବେକାରୀ ବିରୁଦ୍ଧରେ, କାମ କରିବାର ଅଧିକାର ଓ ଚାକିରୀ ସୃଷ୍ଟି ପାଇଁ ଏବଂ ବେକାରମାନଙ୍କୁ ସହାୟତା ଦେବା ପାଇଁ ସଂଗ୍ରାମକୁ ମଧ୍ୟ ଟ୍ରେଡ଼ ୟୁନିୟନମାନଙ୍କୁ ହାତକୁ ନେବାକୁ ପଡ଼ିବ।

## ୧୩. ଶ୍ରମଜୀବୀ ମହିଳାମାନଙ୍କ ମଧ୍ୟରେ ଆମର କାର୍ଯ୍ୟ

୧୯୮୩ ମସିହାରେ ଗୃହୀତ ''ଟ୍ରେଡ୍ ୟୁନିୟନ୍ ଫ୍ରଣ୍ଟରେ କର୍ତ୍ତବ୍ୟ'' ସଂପର୍କରେ କେନ୍ଦ୍ର କମିଟିର ପ୍ରସ୍ତାବରେ ନଗଣ୍ୟ ମହିଳା ସଭ୍ୟ ସଂଖ୍ୟା ଓ ଟ୍ରେଡ଼ ୟୁନିୟନରେ ସେମାନଙ୍କର ନଗଣ୍ୟ ଅଂଶଗ୍ରହଣକୁ ଟ୍ରେଡ ୟୁନିୟନ୍ ଆନ୍ଦୋଳନର ଏକ ଦୁର୍ବଳତା ରୂପେ ଚିହ୍ନିତ କରାଯାଇଥିଲା। ଏହି ପ୍ରସ୍ତାବରେ ଟ୍ରେଡ଼ ୟୁନିୟନମାନେ ମହିଳାମାନଙ୍କର ସମସ୍ୟା ପ୍ରତି ଅବହେଳା ଦେଖାଇବା ଏବଂ ପ୍ରମୋସନ୍ ଆଦି କ୍ଷେତ୍ରରେ ସେମାନଙ୍କ ପ୍ରତି ପାତର ଅନ୍ତର କରିବା ବିରୁଦ୍ଧରେ ନଲଢ଼ିବା ଆଦି ଦୁର୍ବଳତାର ସମାଲୋଚନା କରାଯାଇଥିଲା। ସେଥିରେ ଆହୁରି କୁହାଯାଇଥିଲା: ''ଏପରିକି ଯେଉଁ ଶିଳ୍ପ ବା ସଂସ୍ଥାରେ ମହିଳା ଶ୍ରମିକମାନେ ସଂଖ୍ୟାଧିକ ସେଠାରେ ମଧ୍ୟ ଟ୍ରେଡ୍ ୟୁନିୟନର ସକ୍ରୀୟ କର୍ମୀ ଓ କର୍ମକର୍ତ୍ତାମାନଙ୍କ ମଧ୍ୟରେ ମହିଳାମାନଙ୍କୁ କ୍ୱଚିତ୍ ଦେଖିବାକୁ ମିଳେ।'' ଏହି ଦୁର୍ବଳତା ଦୂର କରିବା ଲାଗି ଶ୍ରମଜୀବୀ ମହିଳା କମିଟି ଗଠନ ଏବଂ ସଂଗଠନର ନେତୃତ୍ୱକାରୀ ପଦପଦବୀରେ ଅଧିକ ସଂଖ୍ୟାରେ ମହିଳାମାନଙ୍କର ନିର୍ବାଚନକୁ ନିଶ୍ଚିତ କରିବା ଅତି ଜରୁରୀ କର୍ତ୍ତବ୍ୟ ବୋଲି ଦର୍ଶାଯାଇଥିଲା।

ସି.ଆଇ.ଟି.ୟୁ. କେନ୍ଦ୍ର ଏ ଦିଗରେ କେତେକ ପଦକ୍ଷେପ ନେଇଛି। ଅନେକ ରାଜ୍ୟ ଏବଂ ଶ୍ରମିକ ସଂଗଠନରେ ଶ୍ରମଜୀବୀ ମହିଳା ସମନ୍ୱୟ କମିଟି / ସବ୍ କମିଟିମାନ ଗଠିତ ହୋଇଛି। ଶ୍ରମଜୀବୀ ମହିଳାମାନଙ୍କ ମଧ୍ୟରେ କାର୍ଯ୍ୟ ଏବଂ ସି.ଆଇ.ଟି.ୟୁ.ର ଶ୍ରେଣୀ ଆଭିମୁଖ୍ୟ ସଂପର୍କରେ ସି.ଆଇ.ଟି.ୟୁ. ବୈଠକଗୁଡ଼ିକରେ ଆଲୋଚନା କରାଯାଇଛି। ସି.ଆଇ.ଟି.ୟୁ. ଉଦ୍ୟମରେ ୧୯୯୧ ଗଠିତ ହୋଇଛି ସର୍ବଭାରତୀୟ ଅଙ୍ଗନବାଡ଼ି ଶ୍ରମିକ ଓ ସହାୟକ ଫେଡ଼େରେସନ୍ ଯେଉଁଥିରେ ଅଧିକାଂଶ ସଭ୍ୟା ମହିଳା ଅଟନ୍ତି। କେତେକ ରାଜ୍ୟରେ ଏହି ସମୟ ମଧ୍ୟରେ ସି.ଆଇ.ଟି.ୟୁ.ର ମହିଳା ସଭ୍ୟା ସଂଖ୍ୟା ବୃଦ୍ଧି ପାଇଛି। ୧୯୭୯ରେ ସି.ଆଇ.ଟି.ୟୁ.ର ମହିଳା ସଭ୍ୟା ସଂଖ୍ୟା ୬.୨% ଥିଲା ବେଳେ ୧୯୯୧ରେ ଏହା ୧୨% ଓ ୧୯୯୮ରେ ୧୭%କୁ ବୃଦ୍ଧି ପାଇଛି। ଏହି ସମୟ ମଧ୍ୟରେ ଟ୍ରେଡ୍ ୟୁନିୟନ କାର୍ଯ୍ୟକ୍ରମରେ ମହିଳାମାନଙ୍କର ଅଂଶଗ୍ରହଣ ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଛି। ସି.ଆଇ.ଟି.ୟୁ. କମିଟି ଗୁଡ଼ିକରେ ଏବଂ ସହବନ୍ଧିତ ଫେଡ଼େରେସନ୍ ୟୁନିୟନଗୁଡ଼ିକର କାର୍ଯ୍ୟକାରୀ କମିଟିରେ ମହିଳାମାନଙ୍କର ପ୍ରତିନିଧିତ୍ୱ ସାମାନ୍ୟ ବୃଦ୍ଧି ପାଇଛି। ଯଦିଓ ସି.ଆଇ.ଟି.ୟୁ.ର ୩୫ ଜଣ କର୍ମକର୍ତ୍ତାଙ୍କ ମଧ୍ୟରୁ ମାତ୍ର ୨ ଜଣ ମହିଳା, ସି.ଆଇ.ଟି.ୟୁ.ର ୧୪୮ଜଣିଆ କାର୍ଯ୍ୟକାରୀ କମିଟିରେ ଏବେ ମହିଳାଙ୍କ ସଂଖ୍ୟା ବୃଦ୍ଧି ପାଇ ୧୦ (୬.୭୫%) ହୋଇଛି ଏବଂ ୪୭୦ଜଣିଆ ସାଧାରଣ ପରିଷଦରେ ୪୦ (୮.୫୧) ହୋଇଛି। ରାଜ୍ୟ ସ୍ତରରେ ସମସ୍ତ ବଡ଼ ରାଜ୍ୟରେ ଅନ୍ତତଃ ଜଣେ ମହିଳା କର୍ମକର୍ତ୍ତାଭାବେ ରହିଛନ୍ତି। ସି.ଆଇ.ଟି.ୟୁ.ର ରାଜ୍ୟ କମିଟି ଓ ଜିଲ୍ଲା କମିଟି ଗୁଡ଼ିକରେ ମଧ୍ୟ ମହିଳାମାନଙ୍କ ସଂଖ୍ୟା ବୃଦ୍ଧି ପାଇଛି।

ମାତ୍ର ଅଧିକାଂଶ କ୍ଷେତ୍ରରେ ଉଚ୍ଚତର କମିଟି, ବିଶେଷତଃ ସି.ଆଇ.ଟି.ୟୁ. କେନ୍ଦ୍ରର ଚାପରେ ମହିଳାମାନଙ୍କୁ କମିଟିରେ ନିଆଯାଇଛି। ସି.ଆଇ.ଟି.ୟୁ. ୟୁନିୟନଗୁଡ଼ିକର ମହିଳା ସବ୍‌କମିଟି ମଧ୍ୟରୁ ଅଧିକାଂଶ ନିଷ୍କ୍ରିୟ। କମିଟିର ଅଧିକାଂଶ ମହିଳା ସଦସ୍ୟା ବୈଠକରେ ଯୋଗ ଦିଅନ୍ତି ନାହିଁ। ଏପରି ଅଭିଯୋଗ ମଧ୍ୟ ଅଛି ଯେ ସଂଯୁକ୍ତ କମିଟିମାନେ ସେମାନଙ୍କର ଯାତାୟତ ଖର୍ଚ୍ଚ ଦେବାର ବ୍ୟବସ୍ଥା କରନ୍ତି ନାହିଁ। ଯେତେବେଳେ ଆର୍ଥିକ ସମସ୍ୟା ଦେଖା ଦିଏ, ଏପରିକି ଆଗୁଆ ରାଜ୍ୟଗୁଡ଼ିକରେ ମଧ୍ୟ ମହିଳାମାନଙ୍କୁ କମିଟି ବୈଠକରେ ଯୋଗ ଦେବାରୁ ବାଦ୍ ଦେଇ ଦିଆଯାଇଥାଏ। ମହିଳାମାନଙ୍କ ସମସ୍ୟା ସେଇମାନେ ହିଁ ବୁଝିବେ ଏପରି ଅବଧାରଣା ଏବେ ବି ରହିଛି। ବୀମା କର୍ମଚାରୀ ୟୁନିୟନ ଏହି ସମସ୍ୟାକୁ ଯଥାଯଥ ଭାବେ ହାତକୁ ନେଇଛି। ବ୍ୟାଙ୍କ ଓ ବୀମାରେ ମହିଳା କର୍ମଚାରୀଙ୍କର କାର୍ଯ୍ୟକ୍ରମରେ କେତେକ ଅଗ୍ରଗତି ପରିଲକ୍ଷିତ ହୋଇଛି। ଅଙ୍ଗନବାଡ଼ି ଶ୍ରମିକମାନଙ୍କୁ ସଂଗଠିତ କରିବା କ୍ଷେତ୍ରରେ ଅର୍ଜିତ ସାଫଲ୍ୟକୁ ସଂହତ କରିବାକୁ ପଡ଼ିବ। ଘରୋଇ କାର୍ଯ୍ୟରେ ନିଯୁକ୍ତ ଶ୍ରମିକମାନଙ୍କ ମଧ୍ୟରେ ଅଧିକାଂଶ ମହିଳା ସେମାନଙ୍କ ପ୍ରତି ଯଥୋଚିତ ଧ୍ୟାନ ଦେବାକୁ ପଡ଼ିବ।

ଟ୍ରେଡ୍ ୟୁନିୟନ ଫ୍ରଣ୍ଟର ସମସ୍ତ ସ୍ତରରେ ପୁରୁଷ କର୍ମୀମାନଙ୍କ ମଧ୍ୟରେ ମହିଳା ଶ୍ରମିକମାନଙ୍କ ପ୍ରତି ଏକ ଅନୁକଂପାମୂଳକ ଓ ପିତୃତାନ୍ତ୍ରିକ ମନୋଭାବ ଏବେ ରହିଛି। ମହିଳାମାନଙ୍କୁ ଟ୍ରେଡ୍ ୟୁନିୟନ୍‌କୁ ଆଣିବା, ସେମାନଙ୍କର ୟୁନିୟନ କାର୍ଯ୍ୟରେ ଅଂଶଗ୍ରହଣ ବୃଦ୍ଧି କରିବା ଓ ସେମାନଙ୍କୁ ୟୁନିୟନର ନେତୃତ୍ୱକୁ ଆଣିବାରେ ଟ୍ରେଡ୍ ୟୁନିୟନମାନଙ୍କର କାର୍ଯ୍ୟକୁ ପାର୍ଟି ସବ୍‌କମିଟିମାନେ ତଦାରଖ କରିବା ଉଚିତ୍।

## ୧୪. ନୂତନ ପ୍ରଯୁକ୍ତି ପ୍ରତି ଆମର ଦୃଷ୍ଟିଭଙ୍ଗୀ

ଅଧିକାଂଶ ଶିଳ୍ପରେ ନୂତନ ପ୍ରଯୁକ୍ତି ଅଭୂତପୂର୍ବ ଗତିରେ ଲାଗୁ ହେଉଛି। ବିଶେଷତଃ ସୂଚନା ପ୍ରଯୁକ୍ତି କ୍ଷେତ୍ର ବିଶାଳ ଭାବେ ସଂପ୍ରସାରିତ ହୋଇଛି ଏବଂ ସଫ୍ଟ୍ୱେୟାର ପ୍ରଯୁକ୍ତିର ରପ୍ତାନୀ ଚାହିଦା ବୃଦ୍ଧି ପାଇ ଚାଲିଛି। ଏ କ୍ଷେତ୍ରରେ ବିଦେଶୀ ପୁଂଜି ବିନିଯୋଗ ବିପୁଳ ପରିମାଣରେ ହୋଇଛି।

କମ୍ୟୁନିଷ୍ଟ ଭାବରେ ଆମ୍ଭେମାନେ ନୂତନ ପ୍ରଯୁକ୍ତିର ବିରୋଧୀ ନୋହୁଁ। କାରଣ ଏହା ଫଳରେ ଉତ୍ପାଦନର ଉନ୍ନତ ଉପାୟର ବିକାଶ ଘଟେ ଏବଂ ପରିଶେଷରେ ସମାଜରେ ଉତ୍ପାଦିକା ଶକ୍ତିର ଅଭିବୃଦ୍ଧିରେ ଏହା ସହାୟକ ହୁଏ। ସେଇଥିପାଇଁ ଆମ୍ଭେମାନେ ଆଧୁନିକ ପ୍ରଯୁକ୍ତି ସହିତ ନୂତନ ଶିଳ୍ପ ସଂସ୍ଥା ପ୍ରତିଷ୍ଠାକୁ ବିରୋଧ କରୁନା।

କିନ୍ତୁ ମାର୍କ୍ସବାଦୀ ଭାବେ ଆମେ ମଧ୍ୟ ଜାଣୁ ଯେ ପୁଂଜିପତିମାନେ ଏହି ପ୍ରଯୁକ୍ତିକୁ ବ୍ୟବହାର କରି ଉତ୍ପାଦନରେ ନିଯୁକ୍ତ ଶ୍ରମ ଶକ୍ତିକୁ ହ୍ରାସ କରିବେ, ଉତ୍ପାଦିକତା ବଢ଼ାଇବେ ଏବଂ ମୁନାଫା ବଢ଼ାଇବେ। ପ୍ରଯୁକ୍ତିର ପ୍ରୟୋଗ ସଂପର୍କରେ ଟ୍ରେଡ୍ ୟୁନିୟନର ଆଭିମୁଖ୍ୟ ସ୍ଥିର କରିବା ସମୟରେ ଆମ୍ଭମାନଙ୍କୁ ଏ ଉଭୟ ଦିଗ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ।

ଯେତେବେଳେ ନୂତନ ପ୍ରଯୁକ୍ତି ସହିତ ନୂତନ ସଂସ୍ଥା ବା ଶିଳ୍ପ ପ୍ରତିଷ୍ଠା ହୁଏ ଆମ୍ଭେମାନେ ପ୍ରଥମ କାରଣ ଯୋଗୁଁ ଏହାକୁ ବିରୋଧ କରୁନା। କିନ୍ତୁ ଯେତେବେଳେ କୌଣସି ଚାଲୁଥିବା ଶିଳ୍ପ ସଂସ୍ଥାରେ ନୂତନ ପ୍ରଯୁକ୍ତି ପ୍ରଚଳନ କରାଯାଏ ସେଠାରେ କର୍ମଚ୍ୟୁତି ଘଟେ, ଶ୍ରମିକଙ୍କ ଉପରେ କାର୍ଯ୍ୟଭାର ବୃଦ୍ଧି ପାଏ ଏବଂ ସେମାନଙ୍କର ସୁବିଧାସୁଯୋଗ ସଂକୁଚିତ ହୁଏ। ସେଠାରେ ଶ୍ରମିକମାନଙ୍କର ସ୍ୱାର୍ଥକୁ ରକ୍ଷା କରିବାକୁ ପଡ଼ିବ ଏବଂ ଚାକିରୀ ରକ୍ଷା କରିବା ଲାଗି ୟୁନିୟନମାନଙ୍କୁ ଲଢ଼ିବାକୁ ପଡ଼ିବ ଓ ପରିସ୍ଥିତି ଅନୁଯାୟୀ ସର୍ବୋତ୍ତମ ରାଜିନାମା ହାସଲ କରିବାକୁ ପଡ଼ିବ। ପ୍ରତିଟି ନିର୍ଦ୍ଦିଷ୍ଟ କ୍ଷେତ୍ରରେ ନୂତନ ପ୍ରଯୁକ୍ତି ପ୍ରଚଳନ ବିଷୟକୁ ବିଚାର କଲାବେଳେ ଟ୍ରେଡ୍‌ୟୁନିୟନ ଆନ୍ଦୋଳନକୁ ନିମ୍ନୋକ୍ତ ବିଷୟଗୁଡ଼ିକ ପ୍ରତି ଧ୍ୟାନ ଦେବାକୁ ପଡ଼ିବ।

କ) ସଂପୃକ୍ତ ଶିଳ୍ପରେ ଶ୍ରମିକମାନଙ୍କର ଚାକିରୀ ପ୍ରତି ଆସନ୍ନ ବିପଦ।

ଖ) ବିଦ୍ୟମାନ ପରିସ୍ଥିତିରେ ଶିଳ୍ପର ସୁରକ୍ଷା ଯଥା ପ୍ରଯୁକ୍ତିର ଉନ୍ନୟନ / ନୂତନ ପ୍ରଯୁକ୍ତି ପ୍ରଚଳନ ଶିଳ୍ପର ସୁରକ୍ଷା ପାଇଁ ଆବଶ୍ୟକ କି ନୁହଁ।

ଗ) ଦେଶ ଓ ଦେଶବାସୀଙ୍କର ବୃହତ୍ତର ସ୍ୱାର୍ଥ ଯଥା ନିରାପତ୍ତା ଓ ପ୍ରଦୂଷଣ ସମସ୍ୟା।

## ୧୫. ଭି.ଆର୍.ଏସ୍. ଯୋଜନା - ଛଟେଇର ନୂଆ ଫାନ୍ଦ

ରାଷ୍ଟ୍ରାୟତ୍ତ ଓ ଘରୋଇ କ୍ଷେତ୍ର ଉଭୟରେ ଶ୍ରମଶକ୍ତି ହ୍ରାସ କରିବାପାଇଁ ସ୍ୱେଚ୍ଛା ଅବସର ଯୋଜନା କାର୍ଯ୍ୟକାରୀ କରାଯାଉଛି। ଖର୍ଚ୍ଚ କାଟର ଏହା ଏକ ମାଧ୍ୟମ। ଉଦାରୀକରଣ ଯୁଗରେ ପ୍ରତିଯୋଗିତାକୁ ସାମନା କରିବା ନାଁରେ ଏହା କରାଯାଉଛି। ବିଭିନ୍ନ ସମୟରେ ( ଭି.ଆର.ଏସ୍. ନେଉଥିବା ଶ୍ରମିକଙ୍କ) କର୍ତ୍ତୃପକ୍ଷ ''ଭଲ'' (Liberal) ଅର୍ଥ ଦେଉଛନ୍ତି। ଉଦ୍ଦେଶ୍ୟ ହେଲା ପୁନଃପୌନିକ ଖର୍ଚ୍ଚ (Operating Cost) ବଞ୍ଚାଇବା। ଦେଖାଯାଉଛି ଆମର କେତେକ ଆଗୁଆ କର୍ମୀ ମଧ୍ୟ ଏପ୍ରକାର ଯୋଜନାର ଶୀକାର ହେଉଛନ୍ତି ଯାହା ଫଳରେ ସାଧାରଣ କର୍ମଚାରୀଙ୍କ ମଧ୍ୟରେ ହତାଶା ଦେଖାଯାଉଛି।

ଟ୍ରେଡ଼ ୟୁନିୟନମାନଙ୍କୁ ଭି.ଆର୍‌.ଏସ୍‌. ସ୍କିମ୍‌କୁ ସଂପୂର୍ଣ୍ଣ ଭାବେ ବିରୋଧ କରିବା ଦରକାର। କାରଣ ଏହା ହେଉଛି ଛଟେଇ ଯୋଜନା। ଅବଶ୍ୟ ୟୁନିୟନର ଅବସ୍ଥାନ ଓ ପ୍ରଚାର ସତ୍ତ୍ୱେ ଯଦି କର୍ମଚାରୀମାନେ ଭି.ଆର୍‌.ଏସ୍‌. ନିଅନ୍ତି ୟୁନିୟନମାନେ ସେମାନଙ୍କୁ ରୋକି ପାରିବେ ନାହିଁ। ଯେଉଁଠି କର୍ତ୍ତୃପକ୍ଷ ବଳପୂର୍ବକ ଏହି ଯୋଜନାକୁ ଲଦି ଦେବ ସେଠାରେ ୟୁନିୟନମାନେ ତାହାର ବିରୋଧ କରିବାକୁ ପଡ଼ିବ।

## ୧୬. ଘରୋଇକରଣ ବିରୁଦ୍ଧରେ ସଂଗ୍ରାମ

ଯେକୌଣସି ବିକାଶଶୀଳ ଦେଶରେ ଆତ୍ମନିର୍ଭରଶୀଳ ଅର୍ଥନୀତିର ବିକାଶ ନିମନ୍ତେ ରାଷ୍ଟ୍ରାୟତ୍ତ କ୍ଷେତ୍ରର ଭୂମିକା ଗୁରୁତ୍ୱପୂର୍ଣ୍ଣ। ଭାରତବର୍ଷରେ ରାଷ୍ଟ୍ରାୟତ୍ତ ସଂସ୍ଥା ଗୁଡ଼ିକର ଘରୋଇକରଣ ଜରିଆରେ ଏହି ଭିତ୍ତିଭୂମିକୁ ଧ୍ୱଂସ କରାଯାଉଛି ଏବଂ ଆଭ୍ୟନ୍ତରୀଣ ବିନିଯୋଗକୁ ସଂକୁଚିତ କରାଯାଉଛି। ଷ୍ଟାଟେଜିକ୍ ପାର୍ଟନର ପାଇବା ନାଁରେ ସରକାର ଘରୋଇ ଏକଚାଟିଆପତିମାନଙ୍କୁ ଉତ୍ସାହିତ କରୁଛନ୍ତି। ସାଂପ୍ରତିକ ସମୟର ଏକ ଉଲ୍ଲେଖନୀୟ ବୈଶିଷ୍ଟ୍ୟ ହେଉଛି ରାଷ୍ଟ୍ରାୟତ୍ତ ସଂସ୍ଥାଗୁଡ଼ିକର ଘରୋଇକରଣ ବିରୁଦ୍ଧରେ ସଂଗ୍ରାମ। ଏହି ସଂଗ୍ରାମ ମଧ୍ୟରେ ଏକ ଉଲ୍ଲେଖନୀୟ ସଂଗ୍ରାମ ହେଉଛି ବୀମା କ୍ଷେତ୍ରରେ ଉନ୍ମୁକ୍ତକରଣ ବିରୁଦ୍ଧରେ ଏ.ଆଇ.ଆଇ.ଇ.ଏ. ନେତୃତ୍ୱରେ ବୀମା କର୍ମଚାରୀମାନଙ୍କର ସଂଗ୍ରାମ। ଘରୋଇକରଣ ବିରୁଦ୍ଧରେ ବ୍ୟାପକ ଜନସଚେତନତା ସୃଷ୍ଟି କରି ଏ.ଆଇ.ଆଇ.ଇ.ଏ. ଦେଢ଼ କୋଟି ଦସ୍ତଖତ ସଂଗ୍ରହ କରିଥିଲା। ଘରୋଇକରଣ ବିରୁଦ୍ଧରେ ବାଲ୍‌କୋ ଶ୍ରମିକମାନେ ଦୀର୍ଘ ୬୭ ଦିନର ମିଳିତ ଧର୍ମଘଟ କରିଛନ୍ତି।

ଘରୋଇକରଣ ବିରୁଦ୍ଧରେ ବ୍ୟାପକ ପ୍ରତିବାଦର ଏକ ସଦ୍ୟ ଦୃଷ୍ଟାନ୍ତ ହେଉଛି ନାଲ୍‌କୋ ଶ୍ରମିକମାନଙ୍କର ସଂଗ୍ରାମ। ନାଲ୍‌କୋ ଘରୋଇକରଣ ବିରୁଦ୍ଧରେ ଓଡ଼ିଶାରେ ବନ୍ଦ ସଂଗଠିତ ହୋଇଛି ଏବଂ ଏହି ଆନ୍ଦୋଳନ ପ୍ରତି ସମସ୍ତ ରାଜନୈତିକ ଦଳ, ଟ୍ରେଡ୍ ୟୁନିୟନ ଓ ଗଣ ସଂଗଠନମାନଙ୍କର ସମର୍ଥନ ରହିଛି। ଘରୋଇକରଣର ପ୍ରତିରୋଧ ସଂଗ୍ରାମରେ ଶ୍ରମିକ ଓ ଟ୍ରେଡ଼ ୟୁନିୟନମାନଙ୍କ ମଧ୍ୟରେ ବ୍ୟାପକ ଏକତା ପ୍ରତିଷ୍ଠା ହେବା ଆବଶ୍ୟକ। ନାଲକୋ କ୍ଷେତ୍ରରେ ଯେପରି ହୋଇଛି ସେହିପରି ଭାବେ ଏହା ଯେତେ ଅଧିକ ସଂଖ୍ୟାରେ ଅନ୍ୟାନ୍ୟ ଅଂଶର ଜନସାଧାରଣଙ୍କୁ ସଂଗଠିତ କରିବାରେ ସମର୍ଥ ହେବ, ଘରୋଇକରଣ ଅନ୍ୟାନ୍ୟ ଅଂଶର ଜନସାଧାରଣଙ୍କୁ ସଂଗଠିତ କରିବାରେ ସମର୍ଥ ହେବ୍, ଘରୋଇକରଣ ଉଦ୍ୟମକୁ ସେତେ ବେଶି ପ୍ରତିହତ କରିହେବ। ଲାଭଦାୟକ ରାଷ୍ଟ୍ରାୟତ୍ତ ସଂସ୍ଥା ଏବଂ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ଥିବା ରାଷ୍ଟ୍ରାୟତ୍ତ ସଂସ୍ଥାର ଘରୋଇକରଣ ବିରୁଦ୍ଧରେ ସଂଗ୍ରାମକୁ ବ୍ୟାପକ ଗଣ ଆନ୍ଦୋଳନରେ ପରିଣତ କରିବାକୁ ପଡ଼ିବ। ଏସବୁ ଆନ୍ଦୋଳନରେ ନେତୃତ୍ୱ ଦେଇ ପାର୍ଟିକୁ ଅନ୍ୟାନ୍ୟ ଅଂଶର ଜନସାଧାରଣଙ୍କର ଟ୍ରେଡ଼ ୟୁନିୟନ ଆନ୍ଦୋଳନ ପ୍ରତି ସମର୍ଥନକୁ ନିଶ୍ଚିତ କରିବାକୁ ପଡ଼ିବ।

## ୧୭. ଶ୍ରମିକ ଶ୍ରେଣୀ ଉପରେ ନୂତନ ଆକ୍ରମଣ

ଚାକିରି ନିରାପତ୍ତା ଓ ଧର୍ମ କରିବାର ଅଧିକାର କ୍ଷେତ୍ରରେ ଶ୍ରମିକ ଶ୍ରେଣୀର ଯତ୍ କିଞ୍ଚିତ ଅଧିକାର ରହିଛି ସେତକ ଅପହରଣ କରିନେବା ଏବଂ ମାଲିକମାନଙ୍କୁ ଶ୍ରମିକମାନଙ୍କର ଚାକିରୀ ସର୍ତ୍ତ ପରିବର୍ତ୍ତନ କରିବାର ନିରଙ୍କୁଶ ଅଧିକାର ଦେବା ଲାଗି ଦ୍ୱିତୀୟ ଜାତୀୟ ଶ୍ରମ କମିଶନ ସୁପାରିଶ କରିଛି। ସି.ଆଇ.ଟି.ୟୁ. ଏବଂ ଆମ ପାର୍ଟି ନେତୃତ୍ୱାଧୀନ ୟୁନିୟନଗୁଡ଼ିକ ଏପ୍ରକାର ପ୍ରତିକ୍ରିୟାଶୀଳ ସୁପାରିଶଗୁଡ଼ିକର କାର୍ଯ୍ୟକାରିତାକୁ ପ୍ରତିହତ କରିବା ଲାଗି ଏକ ଐକ୍ୟବଦ୍ଧ ଶକ୍ତିଶାଳୀ

ସର୍ବଭାରତୀୟ ଆନ୍ଦୋଳନ ନିମନ୍ତେ ବ୍ୟାପକ ପ୍ରଚାର ଅଭିଯାନ ଚଳାଇଯିବା ଉଚିତ। ଶ୍ରମିକ ଶ୍ରେଣୀ ଉପରେ ଓ ସେମାନଙ୍କର ଧର୍ମଘଟ କରିବାର ଅଧିକାର ଉପରେ ବିଜେପି ନେତୃତ୍ୱାଧୀନ ସରକାରର ଆକ୍ରମଣକୁ ଦୃଢ଼ ଭାବେ ବିରୋଧ କରିବାକୁ ହେବ ଏବଂ ଦୀର୍ଘସ୍ଥାୟୀ ସଂଗ୍ରାମ ବଳରେ ଅର୍ଜିତ ଶ୍ରମିକ ଶ୍ରେଣୀର ଅଧିକାରଗୁଡ଼ିକୁ ରକ୍ଷା କରିବାକୁ ପଡ଼ିବ।

## ୧୮. ସାମାଜିକ ସମସ୍ୟା ଉପରେ ଆନ୍ଦୋଳନ

ଟ୍ରେଡ୍ ୟୁନିୟନ ଆନ୍ଦୋଳନର ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀର ଅନ୍ୟତମ ଲକ୍ଷଣ ହେଲା ବ୍ୟାପକ ଅଂଶର ସର୍ବହରାମାନଙ୍କୁ ଆକ୍ରାନ୍ତ କରୁଥିବା ସାମାଜିକ ନିର୍ଯ୍ୟାତନା ସଂପର୍କରେ ସଠିକ୍ ଅବଧାରଣାର ଅଭାବ ଏବଂ ସେସବୁ ସମସ୍ୟା ପ୍ରତି ଅବହେଳା ପ୍ରଦର୍ଶନ। ଭାରତର ଶ୍ରମଜୀବୀ ଜନସାଧାରଣଙ୍କର ଏକ ଉଲ୍ଲେଖନୀୟ ଅଂଶ ହେଉଛନ୍ତି ଦଳିତ ଓ ଆଦିବାସୀ ସଂପ୍ରଦାୟର। ସେମାନେ କେବଳ ଶ୍ରେଣୀ ଶୋଷଣର ଶୀକାର ନୁହଁନ୍ତି, ଜାତିଗତ ଶୋଷଣର ମଧ୍ୟ ଶିକାର। ଅଭିଜ୍ଞତା ହେଉଛି, କେବଳ ମାତ୍ର ଶ୍ରେଣୀ ଶୋଷଣଜନିତ ଅର୍ଥନୈତିକ ସମସ୍ୟା ପାଇଁ ଲଢ଼ିବା ଦ୍ୱାରା ଦଳିତମାନଙ୍କର ସମସ୍ୟାର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ଅଣଆଡ଼ିଆରେ ରହିଯାଏ। ଏହା ଫଳରେ ସେମାନେ ସାଧାରଣ ଟ୍ରେଡ୍ ୟୁନିୟନ ଆନ୍ଦୋଳନରୁ ଦୂରେଇ ଯାଆନ୍ତି। ତା'ଛଡ଼ା ଉଚ୍ଚଜାତିର ଶ୍ରମିକମାନଙ୍କର ଏକାଂଶ ଜାତିଆଣ ମନୋଭାବ ପୋଷଣ କରନ୍ତି ଏବଂ କାର୍ଯ୍ୟକ୍ଷେତ୍ରରେ ଓ ଦୈନନ୍ଦିନ ଚଳଣିରେ ତାହା ପ୍ରକାଶ କରନ୍ତି। ଏହାଫଳରେ ଶ୍ରେଣୀଗତ ଐକ୍ୟ ପ୍ରତିଷ୍ଠାରେ ବାଧା ସୃଷ୍ଟି ହୁଏ। ବ୍ୟାପକ ଅସଂଗଠିତ କ୍ଷେତ୍ରରେ ଦଳିତମାନେ ଅତି କଷ୍ଟସାଧ, ଅଣକୁଶଳୀ ଓ କମ୍ ମଜୁରୀର କାର୍ଯ୍ୟ କରନ୍ତି। ସେମାନଙ୍କ ପାଇଁ କୌଣସି ପ୍ରକାର ସୁରକ୍ଷା ନଥାଏ। ଜାତିଆଣ ଶୋଷଣ ବିରୁଦ୍ଧରେ କେବଳ ମାତ୍ର ପ୍ରସ୍ତାବ ଗ୍ରହଣ କରିବା ବ୍ୟତୀତ ଆମ ନେତୃତ୍ୱରେ ପରିଚାଳିତ ଟ୍ରେଡ ୟୁନିୟନମାନେ ଉଚ୍ଚବର୍ଗର ଶ୍ରମିକମାନଙ୍କୁ ଜାତିଆଣ ମନୋଭାବ ଦୂର କରିବା ନିମନ୍ତେ ଶିକ୍ଷା ଦେବା କ୍ଷେତ୍ରରେ କିଛି କରି ନାହାଁନ୍ତି। ଦଳିତ ଓ ଆଦିବାସୀମାନଙ୍କୁ ୟୁନିୟନର ନେତୃତ୍ୱକୁ ଆଣିବା ଲାଗି ଯଥେଷ୍ଟ ଉଦ୍ୟମ ନେଇ ନାହାଁନ୍ତି। କେତେକ କ୍ଷେତ୍ରରେ ଦେଖାଯାଇଛି ଜାତିଆଣ ମନୋଭାବ ଯୋଗୁଁ ଶ୍ରମିକମାନେ ଦଳିତ ନେତାମାନଙ୍କୁ ସ୍ୱୀକାର କରିବାକୁ କୁଣ୍ଠା ପ୍ରକାଶ କରୁଛନ୍ତି।

ସି.ଆଇ.ଟି.ୟୁ. ଏବଂ ପାର୍ଟି ନେତୃତ୍ୱରେ ପରିଚାଳିତ ୟୁନିୟନମାନଙ୍କୁ ଜାତିଆଣ ନିର୍ଯ୍ୟାତନା ବିଷୟକୁ ସିଧାସଳଖ ଭାବେ ହାତକୁ ନେବାକୁ ପଡ଼ିବ ଏବଂ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ମଧ୍ୟରେ ସମସ୍ତ ପ୍ରକାର ଜାତିଆଣ ବୈଷମ୍ୟ ଓ ଜାତିଆଣ ମନୋଭାବ ବିରୁଦ୍ଧରେ ଲଢ଼ିବାକୁ ପଡ଼ିବ। କେତେକ ଦଳିତ ନେତା ଓ ସଂଗଠନ ରହିଛନ୍ତି ଯେଉଁମାନେ ଦଳିତ ଶ୍ରମିକମାନଙ୍କୁ ସାଧାରଣ ଟ୍ରେଡ୍ ୟୁନିୟନ ଆନ୍ଦୋଳନରୁ ଦୂରେଇ ନେବାକୁ ଚାହାନ୍ତି। ଦଳିତ ଶ୍ରମିକମାନଙ୍କ ସହ ସଂପର୍କ ରକ୍ଷା କରିବା ଏବଂ ସେମାନଙ୍କୁ ସାଧାରଣ ଆନ୍ଦୋଳନ ମଧ୍ୟକୁ ଆଣିବା ଲାଗି ସମସ୍ତ ପ୍ରକାର ଉଦ୍ୟମ କରିବାକୁ ପଡ଼ିବ। ବ୍ୟାପକ ଘରୋଇକରଣ ଫଳରେ ଚାକିରୀରେ ଦଳିତ / ଆଦିବାସୀମାନଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା ଉଠିଯାଉଛି ଏବଂ ଏସବୁ ସଂସ୍ଥାରେ ସଂରକ୍ଷଣ ବ୍ୟବସ୍ଥା ପୂର୍ବ ଭଳି ଚାଲୁ ରଖିବା ପାଇଁ ଆମ୍ଭମାନଙ୍କୁ ଦାବି କରିବାକୁ ପଡ଼ିବ। ଏହା ଫଳରେ ଦଳିତ / ଆଦିବାସୀ ଶ୍ରମିକମାନଙ୍କର ସ୍ୱାର୍ଥ ଅକ୍ଷୁର୍ଣ୍ଣ ରହିବ।

ବିବାହ ଖର୍ଚ୍ଚ ଅତ୍ୟଧିକ ବୃଦ୍ଧି ପାଇବା ଫଳରେ ଶ୍ରମିକମାନଙ୍କର ଜୀବନକୁ ଆକ୍ରାନ୍ତ କରୁଥିବା ଯୌତୁକ ପ୍ରଥା ପରି ସାମାଜିକ ସମସ୍ୟାଗୁଡ଼ିକୁ ମଧ୍ୟ ଟ୍ରେଡ୍ ୟୁନିୟନମାନଙ୍କୁ ହାତକୁ

ନେବାକୁ ପଡ଼ିବ। ଆଦିବାସୀ ଓ ଦଳିତ ମହିଳାମାନଙ୍କର ଯୌନ ନିର୍ଯ୍ୟାତନା ବିରୁଦ୍ଧରେ ଟ୍ରେଡ଼ ୟୁନିୟନମାନଙ୍କୁ ଲଢ଼ିବାକୁ ପଡ଼ିବ। ମାଲିକ ପକ୍ଷ ଓ ସେମାନଙ୍କର ସ୍ତାବକମାନଙ୍କର ଶୋଷଣ ବିରୁଦ୍ଧରେ ସଂଗ୍ରାମର ଏହା ଏକ ଅଂଶବିଶେଷ। ଆଦିବାସୀମାନଙ୍କର ସାମାଜିକ ସମସ୍ୟା ଏବଂ ଶିଶୁ ଶ୍ରମିକ ଓ ଗୋଟି ଶ୍ରମିକମାନଙ୍କର ସମସ୍ୟା ଯାହାକି ସର୍ବହରା ଶ୍ରେଣୀର ଏକାଂଶକୁ ଆକ୍ରାନ୍ତ କରୁଛି ସେସବୁକୁ ମୁକାବିଲା କରିବାକୁ ପଡ଼ିବ। ସାମନ୍ତବାଦୀ ଶୋଷଣ ପୁଂଜିବାଦୀ ଶୋଷଣ ଏବଂ ଅର୍ଥନୀତି ବହିର୍ଭୁତ ଶୋଷଣ ଧାରା ବିରୁଦ୍ଧରେ ଶ୍ରମିକ ଶ୍ରେଣୀର ସଂଗ୍ରାମର ଏହା ଅଂଶ ବିଶେଷ।

## ୧୯. ସଂସ୍କାରବାଦୀ ୟୁନିଅନ୍ ମଧ୍ୟରେ କାର୍ଯ୍ୟ

ସଂସ୍କାରବାଦୀ ୟୁନିୟନଗୁଡ଼ିକରେ କାର୍ଯ୍ୟ ଜରିଆରେ ସାଧାରଣ ଶ୍ରମିକଙ୍କ ସହିତ ନିବିଡ ସଂପର୍କ ରକ୍ଷା କରିବା ଓ ସେମାନଙ୍କ ମଧ୍ୟରେ ଆମର କାର୍ଯ୍ୟକଳାପ ବୃଦ୍ଧି କରିବାପାଇଁ ୧୯୮୩ ମସିହା ଦଲିଲରେ ସ୍ପଷ୍ଟ ନିର୍ଦ୍ଦେଶ ଦିଆଯାଇଥିଲେ ହେଁ ଆମ୍ଭେମାନେ ଏ ଦିଗରେ ବିଶେଷ କିଛି ଅଗ୍ରଗତି କରି ପାରିନାହୁଁ। ଆମର ଅଧିକାଂଶ ସାଥୀ ଛୋଟ ୟୁନିୟନରେ ରହି ସନ୍ତୁଷ୍ଟ ରହୁଛନ୍ତି ଏବଂ ସାଧାରଣ ଶ୍ରମିକମାନଙ୍କଠାରୁ ବିଚ୍ଛିନ୍ନ ହୋଇ ରହୁଛନ୍ତି। ଏପ୍ରକାର ମନୋଭାବ ଫଳରେ ଆମର ପ୍ରଭାବ ବୃଦ୍ଧି ବ୍ୟାହତ ହେଉଛି। ଏ ବିଷୟର ଗୁରୁତ୍ୱ ବୁଝିବା ପାଇଁ ଆମ୍ଭମାନଙ୍କୁ ଆମର କର୍ମୀମାନଙ୍କୁ ଶିକ୍ଷିତ କରିବାକୁ ପଡ଼ିବ ଏବଂ ଆମର ସାଥୀମାନେ କାର୍ଯ୍ୟ କରିବା ନିମନ୍ତେ ସଂସ୍କାରବାଦୀ ୟୁନିୟନଗୁଡିକୁ ଚିହ୍ନଟ କରିବାକୁ ପଡ଼ିବ

ସଂସ୍କାରବାଦୀ ୟୁନିୟନ୍‌ରେ କାର୍ଯ୍ୟ କରିବାର କମ୍ୟୁନିଷ୍ଟ ଦୃଷ୍ଟିଭଂଗୀର ବିକାଶ ନିମନ୍ତେ ପାର୍ଟି କମିଟିମାନେ ଆଦୌ ଧ୍ୟାନ ଦେଇ ନାହାଁନ୍ତି। ସଂସ୍କାରବାଦୀ ୟୁନିୟନ୍‌ରେ ସଂଖ୍ୟାଗରିଷ୍ଠ ଶ୍ରମିକ ରହିଥିଲା ବେଳେ ସେଠାରେ କ୍ଷୁଦ୍ର ସଂଖ୍ୟକ ଶ୍ରମିକଙ୍କୁ ନେଇ ଆଉ ଏକ ସଂଗଠନ ଗଠନର କୌଣସି ଯଥାର୍ଥତା ନାହିଁ। ଘାଟି ଶିଳ୍ପ ଓ ଗୁରୁତ୍ୱପୂର୍ଣ୍ଣ ଶିଳ୍ପ କ୍ଷେତ୍ରରେ ଆମର କାର୍ଯ୍ୟର ଅଗ୍ରଗତି ନିମନ୍ତେ ଆମ୍ଭମାନଙ୍କୁ ସଂସ୍କାରବାଦୀ ୟୁନିୟନ୍ ଗୁଡିକରେ କାର୍ଯ୍ୟକରିବାକୁ ପଡ଼ିବ ଏବଂ ପାର୍ଟି ଫ୍ରାକ୍ସନ ଜରିଆରେ ଏଗୁଡିକୁ ପରିଚାଳନା କରିବା ଅତି ଜରୁରୀ

## ୨୦. ଗଣତାନ୍ତ୍ରିକ ପରିଚାଳନା

ଟ୍ରେଡ୍ ୟୁନିଅନ୍‌ରେ ଗଣତାନ୍ତ୍ରିକ ପରିଚାଳନାର ଆବଶ୍ୟକତା ସଂପର୍କରେ ୧୯୮୩ ଦଲିଲ୍‌ରେ ଗୁରୁତ୍ୱ ଆରୋପ କରାଯାଇଥିଲା। ସି.ଆଇ.ଟି.ୟୁ.ର ପରବର୍ତ୍ତୀ ସମ୍ମିଳନୀ ଗୁଡିକରେ ଏହାର ଗୁରୁତ୍ୱ ସଂପର୍କରେ ଆଲୋଚନା କରାଯାଇଛି। ମାତ୍ର ଏ ସଂପର୍କରେ ଅଗ୍ରଗତି ଅତି ସାମାନ୍ୟ ଏବଂ ତା' ମଧ୍ୟ ସମାନ ନୁହେଁ। ଯଦିଓ ଅନେକ କେନ୍ଦ୍ରରେ ୟୁନିୟନ୍ ଗୁଡିକର ନିୟମିତ ନିର୍ବାଚନ ସଂଗଠିତ କରିବା କ୍ଷେତ୍ରରେ କିଛିଟା ଧ୍ୟାନ ଦିଆଯାଇଛି ଗଣତାନ୍ତ୍ରିକ ପରଚାଳନାର ମର୍ମବସ୍ତୁକୁ ବୁଝିବା ଓ ତାହା କାର୍ଯ୍ୟକାରୀ-କରିବାର ଏବେ ବି ଅଭାବ ରହିଛି। ଟ୍ରେଡ଼ ୟୁନିୟନ ସବ୍‌କମିଟି ଓ ପାର୍ଟି କମିଟିମାନେ ଏଥିଲାଗି ନିମ୍ନୋକ୍ତ ବିଷୟରେ ସମୀକ୍ଷା କରିବା ଦରକାର : (କ) ୟୁନିୟନ ବୈଠକରେ ଶ୍ରମିକମାନଙ୍କର ଅଂଶଗ୍ରହଣ, (ଖ) ଭିନ୍ନ ମତ ପୋଷଣ କରିବା ଓ ସଂଖ୍ୟାଲଘୁ ମତପୋଷଣ କରିବା (ଗ) ଫ୍ରାକ୍ସନ୍ ମାନଙ୍କ ସହିତ ପରାମର୍ଶ କ୍ରମେ ମୁଖ୍ୟ ପଦପଦବୀ ନିମନ୍ତେ ପାର୍ଟିର ପ୍ରସ୍ତାବ ସହିତ ନିୟମିତ ନିର୍ବାଚନ କରିବା, (ଘ) ଜଣେ ନେତାଙ୍କ ହାତରେ ସମସ୍ତ ଦାୟିତ୍ୱ କେନ୍ଦ୍ରୀଭୂତ କରିବା ବଦଳରେ ଯୁବ ଓ ନୂତନ ସାଥୀମାନଙ୍କୁ ଅଧିକ

ଦାୟିତ୍ୱ ଦେବା, (ଙ) ଅମଲାତାନ୍ତ୍ରିକତା ବୃଦ୍ଧି ଓ ଅନୈତିକ କାର୍ଯ୍ୟକୁ ରୋକିବା ପାଇଁ ପଦକ୍ଷେପ ନେବା।

## ୨୧. ଟ୍ରେଡ଼ ୟୁନିୟନ ଗୁଡ଼ିକରେ ପାର୍ଟି ଗଠନ

ଆମର ଟ୍ରେଡ଼ ୟୁନିୟନ କର୍ମୀମାନଙ୍କ ମଧ୍ୟରେ ଗୁରୁତର ବିଚ୍ୟୁତି ଏବଂ ଅଧିକ ସଂଖ୍ୟାରେ ଶ୍ରମିକଙ୍କୁ ପାର୍ଟି ଭିତରକୁ ଆଣିବା ଓ ସେମାନଙ୍କୁ ପାର୍ଟି ସଭ୍ୟଭାବେ କାର୍ଯ୍ୟ କରିବାପାଇଁ ଶିକ୍ଷିତ କରିବାରେ ବିଫଳତା ସଂପର୍କରେ ୧୯୬୭ର ଟ୍ରେଡ଼ ୟୁନିୟନ୍ ଦଲିଲ୍‌ରେ ଗୁରୁତ୍ୱ ସହକାରେ ଆଲୋଚନା କରାଯାଇଥିଲା। ବିଗତ ବର୍ଷମାନଙ୍କରେ ଶ୍ରମିକ ଶ୍ରେଣୀର ଅସଂଖ୍ୟ ସଂଗ୍ରାମ ସଂଗଠିତ ହେବା ସତ୍ତ୍ୱେ ଶକ୍ତିଶାଳୀ ରାଜ୍ୟମାନଙ୍କରେ ଏଦିଗରେ ଅଗ୍ରଗତି ସନ୍ତୋଷଜନକ ନୁହେଁ ଏବଂ ଅଧିକାଂଶ ଦୁର୍ବଳ ରାଜ୍ୟମାନଙ୍କରେ ଆଦୌ ଅଗ୍ରଗତି ହୋଇ ନାହିଁ। ବରଂ କେତେକ କ୍ଷେତ୍ରରେ ଅଧୋଗତି ହୋଇଛି। ଶ୍ରମିକ ଶ୍ରେଣୀ ମଧ୍ୟରୁ ପାର୍ଟି ସଭ୍ୟ ସଂଖ୍ୟା ବୃଦ୍ଧି ନହେବାର ଏକ ମୁଖ୍ୟ କାରଣ ହେଉଛି ଶିଳ୍ପ କ୍ଷେତ୍ରରେ ସଂକଟ। କ୍ଲୋଜର, ଛଟେଇ, ଭି.ଆର୍.ଏସ୍. ଏବଂ ନିଯୁକ୍ତି ଉପରେ ନିଷେଧାଜ୍ଞାର ପ୍ରଭାବ ମଧ୍ୟ ରହିଛି। କିନ୍ତୁ ଏପରିକି ଯେଉଁଠି ଶ୍ରମିକମାନେ ଅଛନ୍ତି ଏବଂ ଆମର ଟ୍ରେଡ ୟୁନିୟନମାନେ ସେମାନଙ୍କ ମଧ୍ୟରେ କାର୍ଯ୍ୟ କରୁଛନ୍ତି ସେଠାରେ ମଧ୍ୟ ଆମର କାର୍ଯ୍ୟ ଓ ପ୍ରଭାବ ତୁଳନାରେ ପାର୍ଟି ସଭ୍ୟ ନାହାଁନ୍ତି।

ପାର୍ଟି ସଭ୍ୟ ସଂଖ୍ୟା ହ୍ରାସ ପାଇବା ବା କମ୍ ହେବାର ମୁଖ୍ୟ କାରଣ ହେଉଛି ଟ୍ରେଡ଼ ୟୁନିୟନ ଫ୍ରଣ୍ଟରେ କାର୍ଯ୍ୟ କରୁଥିବା ଆମର ପାର୍ଟି ସଭ୍ୟ ଓ ନେତାମାନଙ୍କର ଚେତନାର ଅଭାବ ଯେ, " ଶ୍ରମିକମାନଙ୍କର ଦୈନନ୍ଦିନ ସ୍ୱାର୍ଥ ରକ୍ଷା କରିବା ସଂଗେ ସଂଗେ ମାର୍କ୍ସବାଦୀମାନଙ୍କର ଲକ୍ଷ୍ୟ ହେବା ଉଚିତ୍ ବୈପ୍ଲବିକ ଚେତନା ସହିତ ଶୃଙ୍ଖଳିତ ଶ୍ରମିକ ଶ୍ରେଣୀଙ୍କୁ ସଂଗଠିତ କରିବା, ସେମାନଙ୍କୁ ପାର୍ଟିର ନିକଟତର କରିବା, ସେମାନଙ୍କ ମଧ୍ୟରୁ ସର୍ବୋତ୍ତମ ଶ୍ରମିକଙ୍କ ଶହ ଶହ ସଂଖ୍ୟାରେ ପାର୍ଟି ସଭ୍ୟଭୁକ୍ତ କରିବା, ବୈପ୍ଲବିକ ସଂଗ୍ରାମରେ ନିଜର ଐତିହାସିକ ରାଜନୈତିକ ଭୂମିକା ପାଳନ କରିବା ନିମନ୍ତେ ସମଗ୍ର ଶ୍ରମିକ ଶ୍ରେଣୀକୁ ପ୍ରସ୍ତୁତ କରିବା।"

ଟ୍ରେଡ଼ ୟୁନିୟନ ଫ୍ରଣ୍ଟରେ କାର୍ଯ୍ୟ କରୁଥିବା ପାର୍ଟି ସଭ୍ୟମାନଙ୍କୁ ଏହି ଚେତନାରେ ଉଦ୍‌ବୁଦ୍ଧ କରିବା ନିମନ୍ତେ ପାର୍ଟି କମିଟିମାନଙ୍କୁ ସଚେତନ ଓ ଯୋଜନାବଦ୍ଧ ଉଦ୍ୟମ ନେବାକୁ ପଡ଼ିବ ଏବଂ ଧାରାବାହିକ ଭାବେ ପାର୍ଟି ସଭ୍ୟ ରିକ୍ରୁଟ୍‌ମେଣ୍ଟ୍‌କୁ ସମୀକ୍ଷା ଓ ପରିଚାଳନା କରିବାକୁ ପଡ଼ିବ।

୧୭ଶ ପାର୍ଟି କଂଗ୍ରେସ ସମୟରେ ବିଭିନ୍ନ ରାଜ୍ୟରେ ଶ୍ରେଣୀଗତ ଭାବେ ପାର୍ଟି ସଭ୍ୟ ସଂଖ୍ୟା ନିମ୍ନମତେ ଥିଲା- ପଶ୍ଚିମବଂଗ-୧୫.୭୫%, କେରଳ ୫୦.୫୦%, ତ୍ରିପୁରା ୧୬.୧%, ତାମିଲନାଡୁ ୩୯.୩%, ଆନ୍ଧ୍ର ୧୦%, ପଂଜାବ ୫.୩୭%, ମଧ୍ୟପ୍ରଦେଶ ୩୮.୨୫%, ଝାଡ଼ଖଣ୍ଡ ୧୨.୦୯%, ହରିଆନା ୨୧.୦୪%, ମହାରାଷ୍ଟ୍ର ୧୫.୪% ଓ ରାଜସ୍ଥାନ ୨୩.୯୫%।

ବିଭିନ୍ନ ରାଜ୍ୟରେ ସି.ଆଇ.ଟି.ୟୁ.ର ମୋଟ ସଭ୍ୟ ସଂଖ୍ୟା ତୁଳନାରେ ଶ୍ରମିକ ଶ୍ରେଣୀରୁ ଆସିଥିବା ପାର୍ଟି ସଭ୍ୟ ସଂଖ୍ୟାର ଅନୁପାତକୁ ବିଚାର କଲେ ସି.ଆଇ.ଟି.ୟୁ. ପରିଚାଳିତ ୟୁନିୟନର ଶ୍ରମିକମାନଙ୍କ ମଧ୍ୟରେ ପାର୍ଟି ଗଠନ ପ୍ରତି କିପରି ଅବହେଳା ରହିଛି ତାହା ସ୍ପଷ୍ଟ ଦେଖି ହେବ। ମିଳିଥିବା ହିସାବ ଅନୁସାରେ (୧୯୯୯) ପଶ୍ଚିମବଂଗରେ ସି.ଆଇ.ଟି.ୟୁ. ସଭ୍ୟମାନଙ୍କ ମଧ୍ୟରୁ ମାତ୍ର ୨.୫% ପାର୍ଟି ସଭ୍ୟ ଥିଲେ। ଆନ୍ଧ୍ର ପ୍ରଦେଶରେ ଏହା ଥିଲା ୨.୬%, ମହାରାଷ୍ଟ୍ରରେ

୧.୬%, ଆସାମରେ ୩.୮%, ରାଜସ୍ଥାନରେ ୨%, ପଂଜାବରେ ୧%, ମଧ୍ୟପ୍ରଦେଶରେ ୪.୩% ଏବଂ ଦିଲ୍ଲୀରେ ୧.୮%। କେରଳ ବ୍ୟତୀତ ଅନ୍ୟ କୌଣସି ରାଜ୍ୟରେ ସି.ଆଇ.ଟି.ୟୁ. ୟୁନିୟନର ସଭ୍ୟ ସଂଖ୍ୟାର ୫% ମଧ୍ୟ ପାର୍ଟି ସଭ୍ୟ ନୁହଁନ୍ତି। ଟ୍ରେଡ଼ ୟୁନିୟନ ଫ୍ରଣ୍ଟରେ କାର୍ଯ୍ୟ କରୁଥିବା ପାର୍ଟି କର୍ମୀ ସଂପୃକ୍ତ ପାର୍ଟି କମିଟିମାନଙ୍କ ସହିତ ବିଚାର କରିବାକୁ ପଡ଼ିବ କାହିଁକି ଶ୍ରମିକ ଶ୍ରେଣୀ ମଧ୍ୟରେ ପାର୍ଟି ଗଠନର ଏପରି ଗୁରୁତର ଅଭାବ ରହିଛି।

ଅନେକ ସ୍ଥାନରେ ଶ୍ରମିକମାନଙ୍କୁ ପାର୍ଟିକୁ ରିକ୍ରୁଟ୍ କରିବା ପ୍ରକ୍ରିୟା ମଧ୍ୟ ତ୍ରୁଟିପୂର୍ଣ୍ଣ। ସାଂଗଠନିକ ରିପୋର୍ଟରୁ ଦେଖାଯାଇଛି ପାର୍ଟି ସଭ୍ୟଙ୍କ ମଧ୍ୟରୁ ଏକ ଉଲ୍ଲେଖନୀୟ ଅଂଶ ପାର୍ଟି ସଭ୍ୟଙ୍କର ମୌଳିକ କର୍ତ୍ତବ୍ୟ କରନ୍ତି ନାହିଁ ଏବଂ ଏପରିକି ସେମାନଙ୍କ ମଧ୍ୟରୁ ଏକାଂଶ ନିଷ୍କ୍ରିୟ ଅଟନ୍ତି। ଶ୍ରମିକ ଶ୍ରେଣୀ ପାର୍ଟି ସଭ୍ୟଙ୍କ କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ। ଏ.ଜି. ଜରିଆରେ ଏବଂ ପ୍ରାର୍ଥୀ ସଭ୍ୟଭାବେ ଆମ୍ଭେମାନେ ଯେଉଁ ଶ୍ରମିକମାନଙ୍କୁ ପାର୍ଟିକୁ ରିକ୍ରୁଟ୍ କରୁଛୁ ସେମାନଙ୍କର ରାଜନୈତିକ ସଚେତନତା ବୃଦ୍ଧି ପାଇଁ ଧ୍ୟାନ ନଦେଲେ ପାର୍ଟି କାର୍ଯ୍ୟରେ ସେମାନଙ୍କର ସକ୍ରିୟ ଅଂଶଗ୍ରହଣ ଓ ବ୍ରାଞ୍ଚ ବୈଠକରେ ନିୟମିତ ଯୋଗଦାନ ଇତ୍ୟାଦିରେ ଉନ୍ନତି ସାଧନ ସମ୍ଭବ ନୁହେଁ। ତା'ଛଡ଼ା ଆମର ପାର୍ଟି ସଭ୍ୟ ଓ ଟ୍ରେଡ୍ ୟୁନିୟନ ଫ୍ରାକ୍ସନମାନେ ବିଭିନ୍ନ ସଂଗ୍ରାମ ବା ନିର୍ବାଚନ ସଂଗ୍ରାମ ମଧ୍ୟ ଦେଇ ବାହାରୁଥିବା ଲଢୁଆ କର୍ମୀମାନଙ୍କୁ ସଚେତନ ଭାବେ ଚିହ୍ନଟ କରନ୍ତି ନାହିଁ, ସେମାନଙ୍କ ସହ ବନ୍ଧୁତ୍ୱ ସ୍ଥାପନ କରନ୍ତି ନାହିଁ ଏବଂ ସେମାନଙ୍କୁ ପାର୍ଟିର ରାଜନୈତିକ ଲାଇନ୍ ସଂପର୍କରେ ଅବଗତ କରାନ୍ତି ନାହିଁ। ପାର୍ଟି ରିକ୍ରୁଟ୍‌ମେଣ୍ଟ୍ ପ୍ରକ୍ରିୟା ଯଦି ଉପରୋକ୍ତ ରାଜନୈତିକ ପରିପ୍ରେକ୍ଷୀ ବିବର୍ଜିତ ହୁଏ ତାହେଲେ ଶ୍ରମିକ ଶ୍ରେଣୀ ପାର୍ଟି ସଭ୍ୟମାନେ ନିଷ୍କ୍ରିୟତାରେ ଭୋଗନ୍ତି ଅଥବା ପାର୍ଟିରୁ ଡ୍ରପ୍ ଆଉଟ୍ ହୁଅନ୍ତି। ଚେତନାର ଅଭାବରୁ ଲେଭି ଦେବାରେ ବାଧା ଦେଖା ଦେଉଛି।

ପାର୍ଟି କମିଟି ଗୁଡ଼ିକର ଆଉ ଏକ ତୃଟି ହେଲା ଶ୍ରମିକମାନଙ୍କ ମଧ୍ୟରେ ରାଜନୈତିକ ସାଂଗଠନିକ କାର୍ଯ୍ୟରେ ପାର୍ଟି ସଭ୍ୟମାନଙ୍କୁ ସକ୍ରିୟଭାବେ ନିୟୋଜିତ କରିବାରେ ବିଫଳତା ଅନେକ କ୍ଷେତ୍ରରେ, ଶ୍ରମିକ ଶ୍ରେଣୀ ପାର୍ଟି ସଭ୍ୟମାନେ କେବଳ ୟୁନିୟନ୍ ବୈଠକରେ ଯୋଗ ଦେବା, ସଭ୍ୟ ଚାନ୍ଦା ଦେବା ଏବଂ ଆନ୍ଦୋଳନର କାର୍ଯ୍ୟକ୍ରମରେ ଯୋଗ ଦେବା ବ୍ୟତୀତ ଗଣ ସଂଗଠନର କୌଣସି କାର୍ଯ୍ୟରେ ଯୋଗ ଦିଅନ୍ତି ନାହିଁ। ଏପରି ମଧ୍ୟ ଦୃଷ୍ଟାନ୍ତ ରହିଛି ଯେଉଁଠିକି କେବଳ ଟ୍ରେଡ୍ ୟୁନିୟନର ପଦପଦବୀ ପାଇବା ପାଇଁ ବା ରଖିବା ପାଇଁ ପାର୍ଟି ସଭ୍ୟପଦ ନିଆଯାଇଛି। ସମସ୍ତ ଟ୍ରେଡ଼ ୟୁନିୟନ କାର୍ଯ୍ୟ ସଦାବେଳିଆ କର୍ମୀଙ୍କ ଉପରେ ଲଦି ଦେଇ ଶ୍ରମିକ ପାର୍ଟି ସଭ୍ୟମାନେ କେବଳ ନିଷ୍କ୍ରିୟ ଯୋଗଦାନକାରୀ ରହିବାର ପ୍ରବଣତା ମଧ୍ୟ ରହିଛି। ଆମ ପାର୍ଟି କମିଟିମାନେ ଶ୍ରମିକ ଶ୍ରେଣୀ ପାର୍ଟି ସଭ୍ୟମାନଙ୍କୁ ଯଥାଯଥ ଓ ଯୋଜନାବଦ୍ଧ ଭାବେ ପାର୍ଟି ଗଠନ, ସାଧାରଣ ଶ୍ରମିକଙ୍କ ମଧ୍ୟରେ ପ୍ରଚାର ଆନ୍ଦୋଳନ ଚଳାଇବା ଏବଂ ପାର୍ଟିର ସାଂଗଠନିକ କର୍ତ୍ତବ୍ୟ କରିବାରେ ବିନିଯୋଗ କରିବାର କଳା ଆୟତ୍ତ କରିନାହାଁନ୍ତି। ପାର୍ଟିର ପ୍ରସାର କ୍ଷେତ୍ରରେ ଅଧାବେଳିଆ (ଶ୍ରମିକ) ପାର୍ଟି ସଭ୍ୟମାନଙ୍କର ସାମର୍ଥ୍ୟକୁ ବିନିଯୋଗ କରିବାରେ ଆମର ଉଦ୍ୟମଶୀଳତାର ଅଭାବ ମଧ୍ୟ ଆଉ ଏକ ମୁଖ୍ୟ ଦୁର୍ବଳତା।

**୨୨. ସବ୍‌କମିଟି ଓ ଫ୍ରାକ୍ସନ ଗୁଡ଼ିକର ଭୂମିକା**

ପାର୍ଟିର ୧୬ଶ କଂଗ୍ରେସ ପାର୍ଟି ସବ୍‌କମିଟି ଓ ଫ୍ରାକ୍ସନର କର୍ତ୍ତବ୍ୟ ସ୍ଥିର କରିଥିଲା। ସେଗୁଡ଼ିକ ମୁଖ୍ୟତଃ:-

(କ) ନିର୍ଦ୍ଦିଷ୍ଟ ଗଣ ଫ୍ରଣ୍ଟରେ ପାର୍ଟି ନୀତିର କାର୍ଯ୍ୟକାରିତାକୁ ସାମଗ୍ରିକ ଭାବେ ତଦାରଖ କରିବା।

(ଖ) ସଂପୃକ୍ତ ଜନଗଣଙ୍କ ମଧ୍ୟରେ ରାଜନୈତିକ ଆଦର୍ଶଗତ କାର୍ଯ୍ୟ ଚଳାଇବା।

(ଗ) ପାର୍ଟି ପତ୍ରପତ୍ରିକା ବଣ୍ଟନ ଓ ବିକ୍ରୟ।

(ଘ) ପାର୍ଟିକୁ ରିକ୍ରୁଟ୍‌ମେଣ୍ଟ ପାଇଁ ସମର୍ଥକମାନଙ୍କୁ ଚିହ୍ନଟ କରିବା।

(ଙ) ଗଣଫ୍ରଣ୍ଟ ସଂପର୍କୀୟ ସିଦ୍ଧାନ୍ତଗୁଡିକୁ କାର୍ଯ୍ୟକାରୀ କରିବାପାଇଁ ପାର୍ଟି କମିଟିଗୁଡ଼ିକୁ ସାହାଯ୍ୟ କରିବା।

ଯଦିଓ ଅଧିକାଂଶ ରାଜ୍ୟ କମିଟି ଟି.ୟୁ. ସବ୍‌କମିଟି ଓ ଫ୍ରାକ୍ସନ୍‌ମାନ ଗଠନ କରିଛନ୍ତି, ରିପୋର୍ଟରୁ ଜଣାଯାଉଛି ଯେ ସେଗୁଡିକ ମଧ୍ୟରୁ ଅଧିକାଂଶ ଏହି ଫ୍ରଣ୍ଟର ସବ୍‌କମିଟିର ମୌଳିକ କର୍ତ୍ତବ୍ୟ ସଂପାଦନ କରୁନାହାଁନ୍ତି। ବାସ୍ତବ କ୍ଷେତ୍ରରେ ଦେଖାଯାଉଛି, ପାର୍ଟି ସବ୍‌କମିଟି ଓ ଫ୍ରାକ୍ସନ କମିଟିମାନେ ଗଣସଂଗଠନର ଦୈନନ୍ଦିନ କାର୍ଯ୍ୟ ପରିଚାଳନା ଅଥବା ସମ୍ମିଳନୀ ଓ କର୍ମକର୍ତ୍ତା ପ୍ୟାନେଲ୍ ସ୍ଥିର କରିବା ଆଦି ବିଷୟ ଆଲୋଚନାରେ ନିଜର କାର୍ଯ୍ୟକୁ ସୀମିତ ରଖୁଛନ୍ତି। ଅନେକ ସମୟରେ ଏପ୍ରକାର କାର୍ଯ୍ୟ ଫଳରେ ଟ୍ରେଡ୍ ୟୁନିୟନର ଗଣତାନ୍ତ୍ରିକ ପରିଚାଳନା ପ୍ରକିୟା ବ୍ୟାହତ ହେଉଛି।

କେତେକ ରାଜ୍ୟର ରାଜ୍ୟ ସମ୍ମିଳନୀ ରିପୋର୍ଟ ଓ ରାଜ୍ୟ କମିଟିର ସାଂଗଠନିକ ରିପୋର୍ଟ ଦର୍ଶାଉଛି ଯେ ଟ୍ରେଡ୍ ୟୁନିୟନ ସବ୍ କମିଟି ଓ ଫ୍ରାକ୍ସନଗୁଡିକ ପାର୍ଟି ଗଠନ, ଟ୍ରେଡ୍ ୟୁନିୟନର ସଂପ୍ରସାରଣ ଓ ଶ୍ରମିକମାନଙ୍କୁ ରାଜନୈତିକ ଭାବେ ସଚେତନ କରିବା କାର୍ଯ୍ୟ ପ୍ରତି ଯଥେଷ୍ଟ ଧ୍ୟାନ ଦେଉ ନାହାଁନ୍ତି। ଏ ସଂପର୍କରେ ପାର୍ଟିର ୧୬ଶ କଂଗ୍ରେସରେ ଗୃହୀତ ନିର୍ଦ୍ଦେଶାବଳୀ ଯଥାଯଥ ଭାବେ କାର୍ଯ୍ୟକାରୀ ହେବା ଉଚିତ।

ପାର୍ଟି କମିଟି ଏବଂ ଟି.ୟୁ. ଫ୍ରଣ୍ଟରେ କାର୍ଯ୍ୟ କରୁଥିବା ନେତୃବୃନ୍ଦ ଏ ଦୁର୍ବଳତାକୁ ଅତିକ୍ରମ କରିବା ନିମନ୍ତେ ସବୁ ସ୍ତରରେ ଉଦ୍ୟମ କରିବା ଦରକାର ଏବଂ ଟ୍ରେଡ୍ ୟୁନିୟନ ସବ୍ କମିଟି ଓ ଫ୍ରାକ୍ସନ୍‌ଗୁଡିକ ସେମାନଙ୍କର ନିର୍ଦ୍ଧାରିତ କର୍ତ୍ତବ୍ୟ ଯେପରି ସଂପାଦନ କରନ୍ତି ତାହା ନିଶ୍ଚିତ କରିବା ଦରକାର।

ଏବେ କିଛି ବର୍ଷ ଧରି କେନ୍ଦ୍ରୀୟ ଟି.ୟୁ. ସବ୍‌କମିଟି ନିୟମିତ ବସୁଛି। ଗତ ତିନିବର୍ଷରେ ସେମାନେ ହାରାହାରି ଅଢ଼େଇ ମାସରେ ଥରେ ବସିଛନ୍ତି। ଟି.ୟୁ. ସବ୍‌କମିଟି ଟି.ୟୁ. କେନ୍ଦ୍ରର କାର୍ଯ୍ୟ ଏବଂ ସମଗ୍ର ଟି.ୟୁ. ଫ୍ରଣ୍ଟର କାର୍ଯ୍ୟକୁ ତଦାରଖ କରିବା ଉଚିତ୍। ଏହା ମଧ୍ୟରେ ସ୍ୱାଧୀନ ଫେଡ଼େରେସନ୍ ଗୁଡିକର କାର୍ଯ୍ୟ ମଧ୍ୟ ଅନ୍ତର୍ଭୁକ୍ତ। ଟ୍ରେଡ୍ ୟୁନିୟନ ଫ୍ରଣ୍ଟରେ ଦେଖା ଦେଉଥିବା ବିଭିନ୍ନ ସମସ୍ୟା ସଂପର୍କରେ ଟି.ୟୁ. ସବ୍‌କମିଟିକୁ ନିୟମିତ ଭାବେ ପି.ବି.କୁ ରିପୋର୍ଟ ଦେବାକୁ ପଡ଼ିବ ଯାହାଦ୍ୱାରା ପି.ବି. ସେ ସଂପର୍କରେ ଆଲୋଚନା କରିପାରିବ। ଯେହେତୁ ଟି.ୟୁ. ସବ୍‌କମିଟିର ଅଧିକାଂଶ ସଭ୍ୟ ସି.ଆଇ.ଟି.ୟୁ. କେନ୍ଦ୍ରରେ କାର୍ଯ୍ୟ କରୁଛନ୍ତି ସେ ଦୃଷ୍ଟିରୁ ନୀତିଗତ ପ୍ରଶ୍ନ ଓ କାର୍ଯ୍ୟ ସମୀକ୍ଷା ଉପରେ ଆଲୋଚନାରେ ପି.ବି.କୁ ମଧ୍ୟ ସଂପୃକ୍ତ କରିବା ଉଚିତ୍।

## ୨୪. ପାର୍ଟି ଓ ଗଣସଂଗଠନ

୧୯୮୧ର ପାର୍ଟି ଓ ଗଣସଂଗଠନ ଦଲିଲ୍‌କୁ ପରବର୍ତ୍ତୀ ସମୟର ଅଭିଜ୍ଞତା ଭିତ୍ତିରେ ସମୟୋପଯୋଗୀ କରିବା ଲାଗି ପାର୍ଟିର ୧୭ଶ କଂଗ୍ରେସ ନିଷ୍ପତ୍ତି ନେଇଛି। ପାର୍ଟି ଓ ଗଣସଂଗଠନ

ମଧ୍ୟରେ ସଂପର୍କ ବିଷୟରେ ସଠିକ୍ ଅବଧାରଣା ଆଣିବା ପାଇଁ ଆମର ବାରମ୍ବାର ଉଦ୍ୟମ ସତ୍ତ୍ୱେ ଏହା ସବୁ ସ୍ତରରେ ସଫଳ ହୋଇ ନାହିଁ। ଏକଥାକୁ ବିଚାର କରି ଉପରୋକ୍ତ ସିଦ୍ଧାନ୍ତ ନିଆଯାଇଛି। ରାଜନୈତିକ ଓ ଅନ୍ୟାନ୍ୟ ଆନୁଗତ୍ୟ ନିର୍ବିଶେଷରେ ଟ୍ରେଡ଼ ୟୁନିୟନ୍ ଯେ ଶ୍ରମିକମାନଙ୍କର ଏକ ବ୍ୟାପକ ସଂଗଠନ ·ଏହି ଅବଧାରଣାର ଅଭାବ ଏବେ ବି ରହିଛି। ନିଜ ନିଜର ସଂବିଧାନ ଅନୁଯାୟୀ ଟ୍ରେଡ଼ ୟୁନିୟନମାନଙ୍କର ସ୍ୱାଧୀନ ପରିଚାଳନା ଏବଂ ସେଥିରେ ପାର୍ଟି ସଭ୍ୟମାନେ କମ୍ୟୁନିଷ୍ଟ ଫ୍ରାକ୍ସନ ଜରିଆରେ କାର୍ଯ୍ୟ କରିବା ଏ ଧାରାକୁ ପକାଯାଇ ପାରି ନାହିଁ। ଅନେକ କ୍ଷେତ୍ରରେ ଟ୍ରେଡ଼ ୟୁନିୟନ ନେତାମାନେ ପାର୍ଟିକୁ ଉପେକ୍ଷା କରିବା ଓ ନିଜ ନିଜର ଖିଆଲ ଖୁସି ଅନୁସାରେ କାର୍ଯ୍ୟ କରିବାର ସମସ୍ୟା ଲାଗି ରହିଛି। ସାଂପ୍ରତିକ ଅଭିଜ୍ଞତା ହେଉଛି ଯେଉଁଠି ପାର୍ଟି ମଧ୍ୟରେ ଉପଦଳୀୟତାବାଦ ରହିଛି ସେଠାରେ ଉପଦଳୀୟ ସ୍ୱାର୍ଥ ଦୃଷ୍ଟିରୁ ପାର୍ଟି ଓ ଟ୍ରେଡ଼ ୟୁନିୟନର ସମସ୍ତ ରୀତିନୀତିକୁ ଲଂଘନ କରାଯାଉଛି। ଅପରପକ୍ଷରେ ପାର୍ଟି କମିଟି ବିଶେଷତଃ ରାଜ୍ୟ କମିଟି ଓ ଜିଲ୍ଲା କମିଟି ଗୁଡ଼ିକର ମଧ ଦୁର୍ବଳତା ରହିଛି। ଟ୍ରେଡ୍ ୟୁନିୟନରେ କାର୍ଯ୍ୟ କରୁଥିବା ପାର୍ଟି ସଭ୍ୟମାନଙ୍କର କାର୍ଯ୍ୟର ପରିଚାଳନା ଓ ତଦାରଖ କରିବା, ଟ୍ରେଡ଼ ୟୁନିୟନ ଫ୍ରଣ୍ଟରେ ପାର୍ଟି ଲାଇନ୍ କିପରି କାର୍ଯ୍ୟକାରୀ ହେଉଛି ତାହା ଆଲୋଚନା କରିବା ଏବଂ ଶ୍ରମିକ ଶ୍ରେଣୀ ଆନ୍ଦୋଳନକୁ ଐକ୍ୟବଦ୍ଧ ଓ ସଂପ୍ରସାରିତ କରିବା କ୍ଷେତ୍ରରେ ଏ ଦୁର୍ବଳତା ରହିଛି।

## ୨୫. କମ୍ୟୁନିଷ୍ଟ ରୀତି ନୀତି ପାଳନ

ଆମର ଟ୍ରେଡ଼ ୟୁନିୟନ କର୍ମୀ ଓ ନେତାମାନେ ସେମାନଙ୍କର କାର୍ଯ୍ୟରେ କମ୍ୟୁନିଷ୍ଟ ରୀତି ନୀତି ପାଳନ କରିବା ଆବଶ୍ୟକ। ଏହାଫଳରେ ଶ୍ରମିକମାନଙ୍କ ମଧ୍ୟରେ ସେମାନଙ୍କର ସମ୍ମାନ ବୃଦ୍ଧି ପାଇବ ଏବଂ ସେମାନେ ଶ୍ରମିକମାନଙ୍କର ଆସ୍ଥାଭାଜନ ହେବେ। କେନ୍ଦ୍ର କମିଟିର ୧୯୯୬ର ବିଶୋଧନ ଦଲିଲ୍‌ରେ ଦର୍ଶାଯାଇଥିଲା ଯେ ଆମର କେତେକ କର୍ମୀମାନଙ୍କ କ୍ଷେତ୍ରରେ ଦୁର୍ନୀତି ଓ ଟ୍ରେଡ଼ ୟୁନିୟନ ପାଣ୍ଠିର ଅପବ୍ୟବହାର ରହିଛି। ଟ୍ରେଡ଼ ୟୁନିୟନରେ ଥିବା ପାର୍ଟି କର୍ମକର୍ତ୍ତାମାନେ ମାଲିକ ପକ୍ଷ ସହିତ ଅନୈତିକ ସଂପର୍କ ରଖିବା ଅନୁଚିତ। ପାର୍ଟି କମିଟିମାନେ ଏ ବିଷୟକୁ ନିୟମିତ ଭାବେ ତଦାରଖ କରିବା ଏବଂ ଆବଶ୍ୟକ ସ୍ଥଳେ ନିର୍ଦ୍ଦେଶାବଳୀ ସ୍ଥିର କରିବା ଦରକାର।

କେତେକ ଟ୍ରେଡ଼ ୟୁନିୟନ ନେତାଙ୍କର ସଂସ୍କାରବାଦୀ କାର୍ଯ୍ୟଧାରା ଟ୍ରେଡ଼ ୟୁନିୟନ କାର୍ଯ୍ୟକୁ ପାର୍ଟିର ମୂଳ ଲାଇନ୍‌ରୁ ବିଚ୍ୟୁତ୍ କରୁଛି। କେତେକ ଟ୍ରେଡ଼ ୟୁନିୟନ ନେତା ଅନ୍ୟାନ୍ୟ ଟ୍ରେଡ଼ ୟୁନିୟନ କାର୍ଯ୍ୟକୁ ଅବହେଳା କରି କେବଳ ମାତ୍ର ଶ୍ରମ ଅଦାଲତରେ ମାମଲା କରିବା ଉପରେ ଗୁରୁତ୍ୱ ଦେଉଛନ୍ତି। ଆଦର୍ଶ ଓ ରାଜନୀତି ବିବର୍ଜିତ ହୋଇ କେତେକଙ୍କ ପାଇଁ ଟ୍ରେଡ଼ ୟୁନିୟନ କରିବା ଏକ ପେଶାରେ ପରିଣତ ହେଉଛି। କେତେକ ଦୃଷ୍ଟାନ୍ତ ରହିଛି ଯେଉଁଠି ଟ୍ରେଡ଼ ୟୁନିୟନ ନେତାମାନେ ନିଜର ମାନ୍ୟତା ରକ୍ଷା କରିବା ଲାଗି ପାର୍ଟି ସଭ୍ୟପଦ ରଖୁଛନ୍ତି କିନ୍ତୁ ୟୁନିୟନକୁ ଗଣତାନ୍ତ୍ରିକ ଭାବେ ପରିଚାଳନା କରିବାକୁ ଏବଂ ପାର୍ଟି ସଭ୍ୟ ରିକ୍ରୁଟ୍ କରିବାକୁ ଚାହୁଁ ନାହାଁନ୍ତି। ଏବେ ବି ଅନେକ ଦୃଷ୍ଟାନ୍ତ ଅଛି ଯେଉଁଠିକି ଜଣେ ନେତା ଅସଂଖ୍ୟ ୟୁନିଅନ୍‌କୁ ନେତୃତ୍ୱ ଦେଉଛନ୍ତି। କେତେକ ପାର୍ଟି କମିଟି ଏପରି କର୍ମୀମାନଙ୍କୁ ଶୃଙ୍ଖଳିତ କରିବାକୁ ନାରାଜ। ଏପ୍ରକାର ବିଚ୍ୟୁତିର ପ୍ରତିକାର ନିମନ୍ତେ ତୁରନ୍ତ ପଦକ୍ଷେପ ନେବା ଆବଶ୍ୟକ।

## ୨୬. ଆଗାମୀ ଦିନର କର୍ତ୍ତବ୍ୟ

ଆମର ଗତ ଦଶନ୍ଧିର କାର୍ଯ୍ୟକଳାପର ସମୀକ୍ଷା ଏବଂ ସମୟରେ ଆମେ ଅର୍ଜନ କରିଥିବା ଅଭିଜ୍ଞତା ଭିତ୍ତିରେ ଟ୍ରେଡ୍ ୟୁନିଅନ୍ ଫ୍ରଣ୍ଟରେ ଆମ୍ଭମାନଙ୍କୁ ନିମ୍ନୋକ୍ତ ଜରୁରୀ କର୍ତ୍ତବ୍ୟମାନ ସଂପାଦନ କରିବାକୁ ପଡ଼ିବ।

(୧) ଟ୍ରେଡ୍ ୟୁନିୟନ ଫ୍ରଣ୍ଟରେ ଉଦାରୀକରଣ ବିରୁଦ୍ଧରେ ଏବଂ ଶ୍ରମଜୀବୀ ଜନଗଣଙ୍କ ସ୍ୱାର୍ଥ ତଥା ଅର୍ଥନୈତିକ ସାର୍ବଭୌମତ୍ୱର ସୁରକ୍ଷା ଲାଗି ବିକଳ୍ପ ନୀତି ପାଇଁ ସଂଗ୍ରାମରେ ଶ୍ରମିକ ଶ୍ରେଣୀର ଏକତା ପ୍ରତିଷ୍ଠା ପାଇଁ ସଂଗ୍ରାମ ଚଳାଇ ଯିବାକୁ ପଡ଼ିବ। ଘରୋଇକରଣ ରାଷ୍ଟ୍ରାୟତ୍ତ ସଂସ୍ଥାର ଧ୍ୱଂସସାଧନ ଏବଂ ଶ୍ରମିକମାନଙ୍କର ଅଧିକାର ଉପରେ ଆକ୍ରମଣ ବିରୁଦ୍ଧରେ ବ୍ୟାପକ ଏକତା ପ୍ରତିଷ୍ଠା କରିବା ସମ୍ଭବ।

(୨) ନୂଆ ନୂଆ କ୍ଷେତ୍ରକୁ ସଂପ୍ରସାରଣ, ଅସଂଗଠିତ ଶ୍ରମିକମାନଙ୍କୁ ସଂଗଠିତ କରିବା ଏବଂ ସଭ୍ୟପଦ ଗ୍ରହଣକୁ ତ୍ୱରାନ୍ୱିତ କରି ଟ୍ରେଡ୍ ୟୁନିୟନର ସଭ୍ୟ ସଂଖ୍ୟା ଭିତ୍ତିକୁ ସୁଦୃଢ଼ କରିବା ଜରିଆରେ ସି.ଆଇ.ଟି.ୟୁ.ର ନିଜସ୍ୱ ଶକ୍ତି ବଢ଼ାଇବାକୁ ପଡ଼ିବ। ଆବଶ୍ୟକ ସ୍ଥଳେ ଏହାକୁ ଅନ୍ୟାନ୍ୟ ଟ୍ରେଡ୍ ୟୁନିୟନମାନଙ୍କର ଦୋଦୁଲ୍ୟମାନତାରୁ ଦୂରରେ ରଖିବାକୁ ପଡ଼ିବ।

(୩) ଶ୍ରମିକ ଶ୍ରେଣୀ ମଧ୍ୟରେ ପାର୍ଟିର ରାଜନୈତିକ ଓ ଆଦର୍ଶଗତ ପ୍ରଚାରକୁ ସିଧାସଳଖ ଭାବେ ନେବା ପାଇଁ ଏବଂ ସେମାନଙ୍କ ମଧ୍ୟରେ ଶ୍ରମିକ ଶ୍ରେଣୀ ବିରୋଧୀ ମତାଦର୍ଶ ପ୍ରଚାରକୁ ପ୍ରତିହତ କରିବାପାଇଁ ପାର୍ଟିକୁ ପଦକ୍ଷେପ ନେବାକୁ ପଡ଼ିବ। ବି.ଏମ୍.ଏସ୍. ଓ ହିନ୍ଦୁତ୍ୱବାଦୀମାନଙ୍କର ସାଂପ୍ରଦାୟିକତାବାଦକୁ ପ୍ରତିହତ କରିବାଲାଗି ସି.ଆଇ.ଟି.ୟୁ. ଏବଂ ଟ୍ରେଡ୍ ୟୁନିୟନ ମଞ୍ଚ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେବାକୁ ପଡ଼ିବ।

(୪) ମହିଳା ଶ୍ରମିକମାନଙ୍କୁ ସଂଗଠିତ କରିବା, ସେମାନଙ୍କୁ ୟୁନିୟନ କାର୍ଯ୍ୟକ୍ରମରେ ସକ୍ରୀୟ କରିବା ଏବଂ ସଂଗଠନର ନେତୃତ୍ୱକୁ ଆଣିବା ଲାଗି ସ୍ୱତନ୍ତ୍ର ଧ୍ୟାନ ଦେବାକୁ ପଡ଼ିବ।

(୫) ବେକାରୀ ସମସ୍ୟାକୁ ଗୁରୁତ୍ୱ ପ୍ରଦାନ କରିବାକୁ ପଡ଼ିବ ଏବଂ କର୍ମଯୋଗାଣ ସୃଷ୍ଟି ଓ ବେକାରଙ୍କୁ ରିଲିଫ ଦେବା ଲାଗି ସଂଗ୍ରାମ କରିବାକୁ ପଡ଼ିବ। ବିଶେଷ ଭାବେ ଦଳିତ, ଆଦିବାସୀ ଓ ମହିଳାମାନଙ୍କୁ ସାଙ୍ଗରେ ନେଇ ଟ୍ରେଡ୍ ୟୁନିୟନମାନଙ୍କୁ ସାମାଜିକ ନିର୍ଯ୍ୟାତନା ସମସ୍ୟାକୁ ସକ୍ରୀୟ ଭାବେ ହାତକୁ ନେବାକୁ ପଡ଼ିବ।

(୬) ସାଧାରଣ ସମସ୍ୟା ଉପରେ ଶ୍ରମିକ-କୃଷକମାନଙ୍କର ମିଳିତ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦେବାକୁ ପଡ଼ିବ ଯଦ୍ୱାରା ଶ୍ରମିକ-କୃଷକ ମୈତ୍ରୀ ପ୍ରତିଷ୍ଠା ସମ୍ଭବ ହେବ। ଏଥିରେ ସାଧାରଣ ସମସ୍ୟା ଉପରେ ମିଳିତ କନ୍‌ଭେନ୍‌ସନ୍‌ମାନ ସଂଗଠିତ କରିବା ଦରକାର।

(୭) ଟ୍ରେଡ୍ ୟୁନିୟନରେ ସଂଗଠିତ ଶ୍ରମିକମାନଙ୍କ ମଧ୍ୟରେ ପାର୍ଟି ଗଠନ ନିମନ୍ତେ ଅଗ୍ରାଧିକାର ଦେବାକୁ ପଡ଼ିବ। ପାର୍ଟି ସଭ୍ୟ ରିକ୍ରୁଟ୍ କରିବା ଏବଂ ସେମାନଙ୍କୁ ନେତୃତ୍ୱାଧିକାରୀ ପଦପଦବୀ ନେବା ଲାଗି ପ୍ରସ୍ତୁତ କରିବା ଲାଗି ପଦକ୍ଷେପ ନେବାକୁ ପଡ଼ିବ। ପାର୍ଟି ୟୁନିଟ୍ ଏବଂ ଫ୍ରାକ୍ସନ କମିଟି ଗୁଡିକର ସୁପରିଚାଳନା ପାଇଁ ତୁରନ୍ତ ପଦକ୍ଷେପ ନେବାକୁ ପଡ଼ିବ। ଟ୍ରେଡ୍ ୟୁନିୟନ ଫ୍ରଣ୍ଟରେ କାର୍ଯ୍ୟ ସଂପର୍କରେ ପାର୍ଟି କମିଟିମାନଙ୍କୁ ନିୟମିତ ଭାବେ ଆଲୋଚନା କରିବାକୁ ପଡ଼ିବ ଏବଂ ଟ୍ରେଡ୍ ୟୁନିୟନ ଫ୍ରଣ୍ଟରେ କାର୍ଯ୍ୟ କରୁଥିବା ପାର୍ଟି କର୍ମୀମାନଙ୍କୁ ଯଥୋଚିତ ଭାବେ ପରିଚାଳିତ କରିବାକୁ ପଡ଼ିବ।

■■■

